# ହରିଶ୍ଚନ୍ଦ୍ର

## ପୌରାଣିକ ନାଟକ

ଲେଖକ

ସ୍ୱର୍ଗତ·କାମପାଳ ମିଶ୍ର

ସମ୍ପାଦନା

ଅଧ୍ୟାପକ, ବାଉରୀବନ୍ଧୁ କର



ଧର୍ମଗ୍ରନ୍ଥ ଷ୍ଟୋର

ପ୍ରକାଶକ :
ଶ୍ରୀ ଅନନ୍ତ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର.
କଟକ-୨

ପ୍ରଥମ ସଂସ୍କରଣ :
ଅଗଷ୍ଟ, ୧୯୮୧
ମୂଲ୍ୟ : ଛ'ଟଙ୍କା ମାତ୍ର

**HARISCHANDRA**
**( Pauranic Drama )**

by :
**Late Kamapala Misra**

Editor :
**Sri Bauribandhu Kar**

Publisher :
**Sri Anant Misra**
**Cuttack Students Store**
**Cuttack 753002**

First Edition :
**August 1981**

Price :
**Rs. 6/- only**

# ଅଗ୍ରଲେଖ

କାମପାଳ ମିଶ୍ର ଓଡ଼ିଆ ସାହିତ୍ୟରେ ଏକ ପରିଚିତ ନାମ । ଓଡ଼ିଆ ସାହିତ୍ୟ ଇତିହାସରେ ଏହାଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । କାମପାଳ କବିତା, ପ୍ରବନ୍ଧ, ଗଳ୍ପ, ନାଟକ ସବୁ ପର୍ଯ୍ୟାୟରେ ଲେଖନୀ ଚାଳନ କରି ନିଜର ମୁଦ୍ରାଙ୍କ ରଖି ଯାଇଅଛନ୍ତି । ଏ ସବୁ ସତ୍ତ୍ୱେ ସେ ଓଡ଼ିଆ ସାହିତ୍ୟରେ ବିଶେଷ ଭାବରେ ଆଲୋଚିତ ନୁହନ୍ତି । ତାଙ୍କ ସାହିତ୍ୟ ସାଧନା ସମ୍ପର୍କରେ ସାହିତ୍ୟର ଇତିହାସ ଲେଖକଗଣ ସାମାନ୍ୟ କେତେ ଧାଡ଼ି ମନ୍ତବ୍ୟ ଦେଇ ନୀରବ ରହିଛନ୍ତି । ଏଯାବତ୍ ତାଙ୍କର ବହୁ କାବ୍ୟ, କବିତା, ନାଟକ ଅପ୍ରକାଶିତ ରହିଅଛି । ସେଗୁଡ଼ିକ ମଧ୍ୟରୁ ତାଙ୍କର ପୌରାଣିକ ନାଟକ 'ହରିଶ୍ଚନ୍ଦ୍ର' ସଙ୍କଳିତ ହୋଇ ସଂପାଦନା କରାଯାଇଛି । ଏହି ନାଟକଟି ସ୍ୱର୍ଗତ ଡକ୍ଟର କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଓ କାମପାଳଙ୍କ ସାହିତ୍ୟାନୁରାଗୀ ପୁତ୍ର ରମାକାନ୍ତ ମିଶ୍ରଙ୍କଠାରୁ ସଂଗ୍ରହ କରାଯାଇଛି । ଏହାର ପ୍ରଥମ ପ୍ରକାଶ ପରିପ୍ରେକ୍ଷିରେ କାମପାଳ ସାହିତ୍ୟର ସ୍ୱରୂପ ଅନୁଶୀଳନ ଅପରିହାର୍ଯ୍ୟ ।

କାମପାଳ ମିଶ୍ର ବୈତରଣୀ ତୀର୍ଥ ବିରଜାକ୍ଷେତ୍ର ଯାଜପୁରର ସପନପୁର ବ୍ରାହ୍ମଣ ଶାସନରେ ୭ ଅଗଷ୍ଟ ୧୮୭୫ ମସିହାରେ ଜନ୍ମଗ୍ରହଣ କରିଥିଲେ । ଯାଜପୁର ଯେପରି ବିରଜା, ବରାହ, ବୈତରଣୀ, ଦଶାଶ୍ୱମେଧ, ସିଦ୍ଧେଶ୍ୱର ଇତ୍ୟାଦି ମନ୍ଦିର ଓ ପ୍ରତ୍ନତତ୍ତ୍ୱ ନେଇ କାଳବକ୍ଷରେ ନିଜର ଐତିହାସିକ ଗୁରୁତ୍ୱ ରକ୍ଷାରେ ସମର୍ଥ ହୋଇଛି, ଠିକ୍ ସେହିପରି ଯାଜପୁରର ସାତଶାସନ ବ୍ରାହ୍ମଣ ମଧ୍ୟ ସ୍ୱ ପାଣ୍ଡିତ୍ୟ ବଳରେ ବିଦ୍ୟାରତ୍ନ, ଅଗ୍ନିହୋତ୍ରୀ, ବିଦ୍ୟାବାଗୀଶ ପ୍ରଭୃତି ଉପାଧିରେ ଭୂଷିତ ହୋଇଥିଲେ । କାମପାଳ ମିଶ୍ର ପ୍ରସିଦ୍ଧ ବିଦ୍ୟାବାଗୀଶ ପରିବାରରେ ଦାମୋଦର ବିଦ୍ୟାବାଗୀଶଙ୍କର ଏକମାତ୍ର ପୁତ୍ର ଥିଲେ । ଦାମୋଦର ବିଦ୍ୟାବାଗୀଶ ବହୁକାଳ ଅପୁତ୍ରକ ଥିବାରୁ କାମପାଳଙ୍କ ଜନ୍ମ ପୂର୍ବରୁ ନୀଳମଣି ମିଶ୍ରଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ ।

ଯାଜପୁରରେ ବିଦ୍ୟାବାଗୀଶ ପରିବାର ସୁପାଣ୍ଡିତ୍ୟ ଏବଂ ସନାତନ ହିନ୍ଦୁଧର୍ମର ଆଦର୍ଶ ବଳରେ ନିଜର ଗୌରବ ରକ୍ଷା କରିଥିଲେ । ବିଦ୍ୟାବାଗୀଶ ପରିବାରରେ ସଂସ୍କୃତଚର୍ଚ୍ଚା ପ୍ରତ୍ୟହ ପ୍ରାତଃ ଓ ସାୟାହ୍ନରେ ହେଉଥିଲା । କାମପାଳଙ୍କ ଜ୍ୟେଷ୍ଠଭ୍ରାତା ନୀଳମଣି ଏହି ସଂସ୍କୃତ ଚର୍ଚ୍ଚା ପ୍ରତି ଆକୃଷ୍ଟ ହୋଇଥିଲେ । ପରବର୍ତ୍ତୀ କାଳରେ ସଂସ୍କୃତ ପଣ୍ଡିତ ରୂପେ ସେ କର୍ମମୟ ଜୀବନ ଅତିବାହିତ କରିଥିଲେ ଓ ଏହା ସହିତ ସେ କାବ୍ୟ କବିତା, ଆଲୋଚନା ଲେଖି ସ୍ୱ ସୃଷ୍ଟି ପ୍ରତିଭାର ପରିଚୟ ଦେଇଥିଲେ । କବିବର ରାଧାନାଥ ରାୟ ସ୍କୁଲ ବିଭାଗର ଇନସ୍‌ପେକ୍ଟର ଥିବା ସମୟରେ ଏହି ପଣ୍ଡିତଙ୍କ ପ୍ରତିଭାରେ ଅଭିଭୂତ ହୋଇପଡ଼ିଥିଲେ । କାମପାଳ ବାଲ୍ୟକାଳରୁ ଅଗ୍ରଜ ନୀଳମଣିଙ୍କ ତତ୍ତ୍ୱାବଧାନରେ ପ୍ରତିପାଳିତ ହୋଇଥିଲେ । କାମପାଳ ଜ୍ୟେଷ୍ଠଭ୍ରାତାଙ୍କ ଯତ୍ନରେ ବାଲ୍ୟଶିକ୍ଷା ସମାପନ କରି ଯାଜପୁର ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କଲେ । ଏହି ସମୟରେ ସେ ବିଦ୍ୟାଳୟକୁ ଯିବା ଓ ଫେରିବା ସମୟରେ ଗୁଣୁ ଗୁଣୁ ହୋଇ କବିତା ପଢ଼ନ୍ତି । ସେ ଛାତ୍ରାବସ୍ଥାରେ 'ସୀତା ବନବାସ' (ଅପ୍ରକାଶିତ) ନାମରେ ଏକ କବିତା ରଚନା କରିଥିଲେ । ଯାଜପୁର ଉଚ୍ଚ ଇଂରାଜୀ ବିଦ୍ୟାଳୟରୁ ଏଣ୍ଟ୍ରାନ୍ସ ପାଶ୍ କରି କାମପାଳ କଟକରେ ରେଭେନ୍‌ସା କଲେଜରେ ଅଧ୍ୟୟନ କଲେ । ରେଭେନ୍‌ସା କଲେଜରେ ଅଧ୍ୟୟନ କାଳରେ ସେ ଅଭିରାମ ଭଞ୍ଜ, ଗୋପାଳଚନ୍ଦ୍ର ପ୍ରହରାଜ, ଶଶିଭୂଷଣ ରାୟ, ଶ୍ୟାମସୁନ୍ଦର ନନ୍ଦ, ବ୍ରଜସୁନ୍ଦର ଦାସ, ଗୋପବନ୍ଧୁ ଦାଶ, ଯୁଗଳ କିଶୋର ତ୍ରିପାଠୀ ପ୍ରମୁଖ ସାହିତ୍ୟିକ ଓ ସମାଜ ସେବକଙ୍କ ନିବିଡ଼ ସଂସ୍ପର୍ଶରେ ଆସିଥିଲେ । ଏହି ସମୟରେ କଟକରେ 'ଷ୍ଟୁଡେଣ୍ଟସ୍ ସୋସିଆଲ କ୍ଲବ୍' (୧୮୯୬), 'ହରିଭକ୍ତି ପ୍ରଦାୟିନୀ ଓ ଶିକ୍ଷା ବିବର୍ଦ୍ଧିନୀ ସଭା' (୧୮୯୪), ଅବକରଭର କ୍ଲବ୍ (ଜୁନ୍ ୧୮୯୬) ଇତ୍ୟାଦି ବିଭିନ୍ନ ସଭା ଓ ଅନୁଷ୍ଠାନ ଥାଏ । କାମପାଳ ଶେଷୋକ୍ତ ଦୁଇଟି ଅନୁଷ୍ଠାନ ସହିତ ସଂଯୁକ୍ତ ଥିଲେ । ସାହିତ୍ୟ ସାଧନା ନିମନ୍ତେ କାମପାଳଙ୍କୁ ଏହି ଦୁଇଟି ଅନୁଷ୍ଠାନ ଯଥେଷ୍ଟ ଉତ୍‌ପ୍ରେରଣା ଯୋଗାଇଛି । ଏ ସମ୍ପର୍କରେ ପରିଚୟ ଦେଇ ଗୋପାଳ ଚନ୍ଦ୍ର ପ୍ରହରାଜ ଉଲ୍ଲେଖ କରିଛନ୍ତି, "ସେହି ସମୟରେ କଲେଜର

ସହପାଠୀମାନଙ୍କର 'ଅବକର୍ଣ୍ଣିବ' ନାମକ ଗୋଟିଏ କ୍ଲବ ଥାଏ ଓ ତନ୍ଧିରେ ଇଂରାଜୀ, ଓଡ଼ିଆ ଓ ବଙ୍ଗଳା ସାହିତ୍ୟର ଆଲୋଚନା ଆମ୍ଭେମାନେ ଧାରାବାହିକ ରୂପେ କରୁଥିଲୁ । ସେହି ସମୟରେ କାମପାଳ ବାବୁଙ୍କର 'ଅପୂର୍ବ ସ୍ୱପ୍ନ' ପଦ୍ୟ ପ୍ରକାଶିତ ହୋଇଥିଲା । ସଙ୍ଗୀମାନେ ସେ ସମୟରେ ଓଡ଼ିଆ ନାଟକର ଅଭାବ ଦେଖି ଆମ୍ଭମାନଙ୍କ ମଧ୍ୟରୁ ସାହିତ୍ୟ କ୍ଷେତ୍ରରେ ବିଶେଷ ପ୍ରତିଭାଶାଳୀ କାମପାଳ ମିଶ୍ରଙ୍କୁ ଏହି କ୍ଷେତ୍ରରେ ଅଗ୍ରସର ହେବାକୁ ଆମେ ଉତ୍ସାହ ଓ ପରାମର୍ଶ ଦେଇଥିଲୁ ଓ ସମୟକ୍ରମେ ତାଙ୍କ ଅଂଶ ଓ ସଙ୍ଗୀତମାନ ଶୁଣି ମୁଗ୍ଧ ହେଉଥିଲୁ ।" (ବସନ୍ତ ଲତିକା-ଭୂମିକା-ଗୋପାଳ ଚନ୍ଦ୍ର ପ୍ରହରାଜ) କାମପାଳ ରେଭେନ୍ସା କଲେଜରେ ଅଧ୍ୟୟନ କାଳରେ ସାହିତ୍ୟିକ ଭାବେ ଖ୍ୟାତି ଅର୍ଜ୍ଜନ କରିଥିଲେ । ସେ ଏହି ସମୟରେ 'ଓଡ଼ିଆ ଓ ନବ ସମ୍ବାଦ', 'ଉତ୍କଳ ସାହିତ୍ୟ' ପତ୍ରିକାରେ ଧାରାବାହିକ ଲେଖୁଥିଲେ । ଛାତ୍ରଜୀବନର ପରିସମାପ୍ତି ପରେ କାମପାଳ କର୍ମମୟ ଜୀବନରେ ମଧ୍ୟ ଅନୁରୂପ ସାହିତ୍ୟପ୍ରୀତିର ପରିଚୟ ଦେଇଥିଲେ । ସେ ମୟୂରଭଞ୍ଜର ବାମନଘାଟି ସବ୍‌ଡିଭିଜନରେ ୧୯୦୩ ମସିହାରେ ଆସିଷ୍ଟାଣ୍ଟ ଏସ୍. ଡି. ଓ. ଥିବାବେଳେ ସୁଦୂର ଗଡ଼ଜାତ ଅଞ୍ଚଳର ଭାଷା ଓ ଶବ୍ଦ ସଂଗ୍ରହ ସକାଶେ ଉଦ୍ୟମ କରିଥିଲେ । ଏ ସମ୍ପର୍କରେ ଉତ୍କଳ ସାହିତ୍ୟରେ ଉଲ୍ଲେଖ ଅଛି; "ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ବିଶୁଦ୍ଧ ଓଡ଼ିଆ ଶବ୍ଦକୋଷ ପ୍ରଣୟନ ନିମିତ୍ତ ଯେଉଁ ଉଦ୍ୟମ ହୋଇଥିଲା, ସେଥିରେ ଫକୀର ଚରଣ ସାହାଣୀ, ଲୋକନାଥ ପଟ୍ଟନାୟକ, କାମପାଳ ମିଶ୍ର, ଶ୍ୟାମସୁନ୍ଦର ନନ୍ଦ ଓଡ଼ିଶା ଗଡ଼ଜାତ ଶବ୍ଦ ସଂଗ୍ରହର ଦାୟିତ୍ୱ ନେଇଥିଲେ ।" (ଉତ୍କଳ ସାହିତ୍ୟ-୮/୧୦-ପୃ ୨୯୧) କାମପାଳ ଉତ୍କଳ ସମ୍ମିଳନୀର ବାର୍ତ୍ତା ଗଡ଼ଜାତର ବିଭିନ୍ନ ଅଞ୍ଚଳରେ ପ୍ରଚାର କରୁଥିଲେ । କାମପାଳ ମୟୂରଭଞ୍ଜର ବ୍ରାହ୍ମଣଘାଟି ଅନ୍ତର୍ଗତ ବାହାଲଦାଠାରେ ମଧ୍ୟ ଏକ ଶାଖା ସମିତି ସ୍ଥାପନ କରିଥିଲେ । ଏହି ସଭାରେ ରାଜକିଶୋର ତ୍ରିପାଠୀ ସଭାପତି, କାମପାଳ ମିଶ୍ର ସମ୍ପାଦକ ଓ ବାବୁ ରଙ୍ଗଲାଲ ବସୁ, ସହସମ୍ପାଦକ ଥିଲେ । (ଉତ୍କଳ ଦୀପିକା-୪୦/୩ ତା ୨୧-୧-୧୯୦୫, ପୃ ୨୭) କାମପାଳ ମିଶ୍ର ଜାତିର ସ୍ୱାର୍ଥ ସଂରକ୍ଷଣ ପାଇଁ କର୍ମ କୋଳାହଳ ମଧ୍ୟରେ

ପୂଜା ବ୍ୟସ୍ତ ଥିଲେ । ସେ ଜାତି ଗଠନର ଅଭୀପ୍ସା ନେଇ କର୍ମକ୍ଷେତ୍ରକୁ ଇସ୍ତଫା ଦେଇଥିଲେ । ଜାତିପାଇଁ ଅହରହ ବ୍ୟସ୍ତ-ଏ ପ୍ରାଣ ବଧିର ଦାରୁଣ ଅଭିଶାପରେ ହେଲେ ପାଗଳ । ପାଗଳ ଅବସ୍ଥାରେ ସେ ସେକସ୍‌ପିୟର, ମିଲ୍‌ଟନ, ଓ୍ୱାର୍ଡସ୍‌ ଓ୍ୱାର୍ଥ ପ୍ରମୁଖଙ୍କ ରଚନା ଭାବବିହ୍ୱଳ ହୋଇ ଆବୃତ୍ତି କରୁଥିଲେ । ଏହି ସାହିତ୍ୟପ୍ରାଣ ସାଧକ ନଭେମ୍ବର ୨୯,୧୯୨୭ ମସିହାରେ ଇହଲୋକରୁ ବିଦାୟ ନେଲେ ।

କାମପାଳ ମିଶ୍ରଙ୍କ ଜୀବନ ଇତିହାସ ସହ ତାଙ୍କ ସାହିତ୍ୟ ସାଧନାର ଇତିହାସ ସମାନ୍ତରାଳ ଭାବରେ ଗତି କରିଛି । ସେ ତାଙ୍କ ଜୀବନରେ ଆଧୁନିକ ଶିକ୍ଷା, ସଭ୍ୟତା, ସଂସ୍କୃତି ସବୁକ୍ଷେତ୍ରରେ ନିଜର ସାହିତ୍ୟପ୍ରୀତି ପ୍ରକାଶ କରିଛନ୍ତି । ସେ ସାଧନାର ସୀମିତ ପରିସରରେ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗକୁ ସମୃଦ୍ଧ କରିଛନ୍ତି । ତାଙ୍କର ସୃଷ୍ଟି ଗୁଡ଼ିକର ପରିଚୟ ନିମ୍ନରେ ପ୍ରଦତ୍ତ ।

କବିତା—'ସୀତା ବନବାସ','ବସନ୍ତ ବିଜୟ','ଧବଳେଶ୍ୱର','ଅପୂର୍ବ ସ୍ୱପ୍ନ'
—(ଖଣ୍ଡକାବ୍ୟ)

'ଅଷ୍ଟମୀ ଜହ୍ନ','କାଳ','ଆଶା','କବି ଉପେନ୍ଦ୍ର ଭଞ୍ଜ','ବନେ ବନ ମଲ୍ଲୀ','ଉଷା ଓ ଗୋଲାପ', 'ଶାନ୍ତ ମନ୍ଦିର','ମଲ୍ଲୀଫୁଲ ଉଲ୍ଲାସ', 'ତାଳପତ୍ର' —(କ୍ଷୁଦ୍ର ଗୀତି କବିତା)

ପ୍ରବନ୍ଧ—'ଶିକ୍ଷା ଓ ସମାଲୋଚନା'

କ୍ଷୁଦ୍ରଗଳ୍ପ—'ଅମ୍ବିକା','ପ୍ରଭାମୟୀ'

ନାଟକ—'ସୀତା ବିବାହ','ବସନ୍ତ ଲତିକା','ହରିଶ୍ଚନ୍ଦ୍ର','ଦୁର୍ଗାଶଙ୍କର'

କାମପାଳ ମିଶ୍ର ସର୍ବାପେକ୍ଷା ନାଟକରେ ନିଜର ଅଧିକ କୃତିତ୍ୱର ପରିଚୟ ଦେଇଥିଲେ । ଫଳରେ ସେ କବି, ଗାଳ୍ପିକ ଓ ପ୍ରାବନ୍ଧିକ ଅପେକ୍ଷା ନାଟ୍ୟକାର ଭାବେ ଅଧିକ ପରିଚିତ ।

ଓଡ଼ିଆ ନାଟ୍ୟ ସାହିତ୍ୟର ଆଦି ସୋପାନରେ କାମପାଳ ମିଶ୍ର ନାଟକ ରଚନା କରିଥିଲେ । ଜଗନ୍ମୋହନ ଲାଲ ଓ ରାମଶଙ୍କର ଯାହାଙ୍କୁ ଛାଡ଼ିଦେଲେ ଆଉ କେହି ଏ ଦିଗରେ ଉଦ୍ୟମ କରି ନ ଥିଲେ । ସେ ସମୟରେ ବାବାଜୀ, ସଖୀ, କାହ୍ନୁ କାବେରୀ, ରାମ ବନବାସ ପ୍ରଭୃତି ସ୍ୱଳ୍ପ କେତେଖଣ୍ଡି ନାଟକ

ପ୍ରକାଶିତ ହୋଇଥିଲା । କାମପାଳ ନାଟ୍ୟ ସାହିତ୍ୟର ଏ ଅବସ୍ଥା ଦୂରକରିବା ସକାଶେ ନାଟକ ରଚନାରେ ମନୋନିବେଶ କରିଥିଲେ । ତାଙ୍କର ନାଟକ-ଗୁଡ଼ିକୁ ଦୁଇ ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ । (କ) ପୌରାଣିକ (ଖ) କାଳ୍ପନିକ । ପୌରାଣିକ ନାଟକ ଭାବରେ 'ସୀତା ବିବାହ' ଓ 'ହରିଶ୍ଚନ୍ଦ୍ର' ଏବଂ କାଳ୍ପନିକ ନାଟକ ଭାବରେ 'ବସନ୍ତ ଲତିକା' ଓ 'ଦୁର୍ଗା ଶବରୀ' ପ୍ରଧାନ ।

କାମପାଳ ମିଶ୍ର ପ୍ରଥମେ ପୌରାଣିକ ନାଟକ ରଚନା କରିଛନ୍ତି । ତାଙ୍କର ସୀତା ବିବାହ ୧୮୯୯ ମସିହାରେ ରଚିତ । ଏ ନାଟକଟି ଓଡ଼ିଶାର ପୂରପଲ୍ଲୀରେ ବିଶେଷ ଭାବରେ ଆଦୃତ । ଏହା ତତ୍କାଳରେ ବିଭିନ୍ନ ସୌଖୀନ ନାଟ୍ୟସଂସ୍ଥାଦ୍ୱାରା ଅଭିନୀତ ହୋଇ ଉଚ୍ଚ ପ୍ରଶଂସିତ ହୋଇଛି । କାମପାଳ ପୌରାଣିକ ନାଟକର ଲୋକପ୍ରିୟତା ଲକ୍ଷ୍ୟକରି 'ହରିଶ୍ଚନ୍ଦ୍ର' ନାଟକ ରଚନା କରିଥିଲେ । ଏହା ୧୯୦୬ ମସିହାରେ ରଚିତ ହୋଇଥିବା ବିଷୟ ପାଣ୍ଡୁଲିପିରୁ ଜଣାପଡ଼େ ।

କାମପାଳ ମିଶ୍ରଙ୍କ 'ହରିଶ୍ଚନ୍ଦ୍ର' ନାଟକଟି ପାଞ୍ଚ ଅଙ୍କରେ ବିଭକ୍ତ । ଏହାର ପ୍ରଥମ ଅଙ୍କରେ ଦୁଇଗୋଟି ଦୃଶ୍ୟ ଓ ଅନ୍ୟ ଅଙ୍କମାନଙ୍କରେ ଚାରିଗୋଟି ଲେଖାଏ ଦୃଶ୍ୟ ରହିଛି । ପ୍ରଥମ ଅଙ୍କରେ ବିଶ୍ୱାମିତ୍ରଙ୍କର ଧ୍ୟାନ ଭଗ୍ନ ଓ ହରିଶ୍ଚନ୍ଦ୍ରଙ୍କୁ ତାଙ୍କର ଯୁଦ୍ଧ ଆହ୍ୱାନ ରହିଛି । ଦ୍ୱିତୀୟ ଅଙ୍କରେ କଳିଯୁଗ ପ୍ରବେଶ କରିଛି ଓ ଏଥିରେ ସମସ୍ତେ କାତର ହୋଇ ପଡ଼ିଛନ୍ତି । ତୃତୀୟ ଅଙ୍କରେ ହରିଶ୍ଚନ୍ଦ୍ରଙ୍କ ଦୁର୍ଦ୍ଦଶାର ଆଦ୍ୟ ପର୍ଯ୍ୟାୟ ଓ ବିଶ୍ୱାମିତ୍ରଙ୍କୁ ତାଙ୍କର ରାଜ୍ୟ ଦାନ ପ୍ରସଙ୍ଗ ବର୍ଣ୍ଣିତ । ରାଜା, ରାଣୀ, ରୋହିତାଶ୍ୱଙ୍କ ରାଜ୍ୟତ୍ୟାଗ. ହରିଶ୍ଚନ୍ଦ୍ରଙ୍କ ସେବା, ଭକ୍ତି ଓ ତ୍ୟାଗ ଏଥିରେ ସ୍ଥାନ ପାଇଛି । ଚତୁର୍ଥ ଅଙ୍କରେ ରାଜା ହରିଶ୍ଚନ୍ଦ୍ରଙ୍କ ଦୁର୍ଦ୍ଦଶା ଆହୁରି କରୁଣ ରୂପ ନେଇଛି । ଦାନର ଦକ୍ଷିଣା ସକାଶେ ବାରାଣସୀର ଏକ ବିପଣୀରେ ରାଣୀ ଶୈବ୍ୟାଙ୍କୁ ସେ ବିକ୍ରୟ କରିଛନ୍ତି । ପରିଶେଷରେ ମଧ୍ୟ ସେ ସ୍ୱୟଂ ବିଶ୍ୱାମିତ୍ରଙ୍କ ନିକଟରେ ଆତ୍ମ ସମର୍ପଣ କରି ଚଣ୍ଡାଳଠାରେ ବିକ୍ରି ହୋଇଛନ୍ତି । ପଞ୍ଚମ ଅଙ୍କରେ ରାଣୀ ଶୈବ୍ୟାଙ୍କର ଜୀବନର କରୁଣ ପର୍ଯ୍ୟାୟ ବର୍ଣ୍ଣିତ । ଶ୍ମଶାନରେ ରାଣୀ ସ୍ୱାମୀ ହରିଶ୍ଚନ୍ଦ୍ରଙ୍କୁ ଚିହ୍ନି ଉଭୟ ମିଳିତ ହୋଇଛନ୍ତି । ନାଟ୍ୟକାର ନାଟକର ସ୍ଥାନେ ସ୍ଥାନେ

ସଙ୍ଗୀତ ଓ ହାସ୍ୟରସର ସଂଯୋଜନା କରିଛନ୍ତି । ନାଟକଟିର କଥାବସ୍ତୁର ବିସ୍ତାର ନିମିତ୍ତ ନାଟ୍ୟକାର ସଂସ୍କୃତ ସାହିତ୍ୟରୁ ଏହା ଆହରଣ କରିଛନ୍ତି । ମାର୍କଣ୍ଡେୟ ପୁରାଣରୁ କଥାବସ୍ତୁକୁ ଆହରଣ କରି ନାଟ୍ୟକାର କାମପାଳ 'ହରିଶ୍ଚନ୍ଦ୍ର' ନାଟକ ରଚନା କରିଛନ୍ତି । ମାର୍କଣ୍ଡେୟ ପୁରାଣରୁ ବିଷୟବସ୍ତୁ ଚୟନ କରିଥିଲେ ସୁଦ୍ଧା ନାଟ୍ୟକାରଙ୍କ ମୌଳିକ ପ୍ରତିଭାର ସ୍ୱାକ୍ଷର ଏଥିରେ ରହିଛି ।

କାମପାଳ 'ହରିଶ୍ଚନ୍ଦ୍ର' ନାଟକରେ ଅମିତ୍ରାକ୍ଷର ଛନ୍ଦର ସଫଳ ପ୍ରୟୋଗ କରିଛନ୍ତି । କାମପାଳ ବିଭିନ୍ନ ରସର ଅବତାରଣାରେ ଏହି ଛନ୍ଦ ବ୍ୟବହାରରେ କୃତିତ୍ୱ ଦେଖାଇଛନ୍ତି । କାମପାଳଙ୍କ ଅମିତ୍ରାକ୍ଷର ଛନ୍ଦ ଯେପରି ଆବେଗପୂର୍ଣ୍ଣ, ସେହିପରି ଭାବଗର୍ଭକ । ଯେପରି :

ରାଣୀ— କାହାର ଆତ୍ମଜା ? ପୁଣ୍ୟଶ୍ଳୋକ ପ୍ରଜାନାଥ
ଅନାଥ ଦରିଦ୍ର ନାଥ ବିପ୍ର ସେବା ରତ,
ଯାଜ୍ଞିକପ୍ରବର ଶ୍ରେଷ୍ଠ ରାଜର୍ଷି ଭୂଷଣ
କରିବ ନରକଗାମୀ ଯେ ପର୍ଯ୍ୟନ୍ତ ଭବେ—ଇତ୍ୟାଦି ।

ନାଟ୍ୟକାର ଛନ୍ଦ ପ୍ରୟୋଗରେ ଔଚିତ୍ୟ ରକ୍ଷା କରିଛନ୍ତି । ନାଟକଟିର ସୌନ୍ଦର୍ଯ୍ୟର ପ୍ରଭୂତ ବୃଦ୍ଧି, ପ୍ରକାଶ ଭଙ୍ଗୀର ଭାବଗାମ୍ଭୀର୍ଯ୍ୟ ଓ ବୈଚିତ୍ର୍ୟ ଏବଂ ନାଟକୀୟ ଭୂମିକାର ସଂଯୋଜନାରେ ଏ ନାଟକଟି ବେଶ୍ ହୃଦୟସ୍ପର୍ଶୀ ହୋଇଛି ।

'ହରିଶ୍ଚନ୍ଦ୍ର' ନାଟକଟି ଏଯାବତ୍ ଅପ୍ରକାଶିତ ଥିଲା । ଏହାକୁ ମୁଁ ମୋର 'ଓଡ଼ିଆ ସାହିତ୍ୟରେ କାମପାଳ ମିଶ୍ର' ଗବେଷଣା କାଳରେ ଆବିଷ୍କାର କରିଥିଲି । ଏହାକୁ ପ୍ରକାଶ କରିବା ପାଇଁ କଟକ ଷ୍ଟୁଡେଣ୍ଟସ୍ ଷ୍ଟୋରର ପ୍ରାଣ ପ୍ରତିଷ୍ଠାତା ପୂଜ୍ୟାସ୍ପଦ ଶ୍ରୀ ଅନନ୍ତ ମିଶ୍ରଙ୍କ ପ୍ରେରଣା ଉଲ୍ଲେଖଯୋଗ୍ୟ । ସୁଧୀ ପାଠକ, ଗବେଷକ, ଛାତ୍ରମାନଙ୍କ ନିକଟରେ ଏହା ଆଦୃତ ହେଲେ ମୋର ଶ୍ରମ ସାର୍ଥକ ହେବ ।

ବାଉରୀବନ୍ଧୁ କର

ଶ୍ରୀ ଗୁଣ୍ଡିଚା; ୧୯୮୧

ରେଭେନ୍‌ସା କଲେଜ, କଟକ ।

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

[ହିମାଳୟ ତପୋବନ, ବିଶ୍ୱାମିତ୍ର ଧ୍ୟାନମଗ୍ନ ହୋଇ ଆସୀନ, ବିଘ୍ନରାଜଙ୍କର ପ୍ରବେଶ]



ବିଘ୍ନରାଜ —[ସ୍ୱଗତ]—ସହସ୍ର ବର୍ଷ ତପସ୍ୟାକରି ମହର୍ଷି ବିଶ୍ୱାମିତ୍ର ପୂର୍ବେ ଯେଉଁ ବିଦ୍ୟାମାନଙ୍କୁ ଆସ୍ୱତ୍ତ କରି ପାରିନାହାନ୍ତି, ସେହି ଉବାଦ ବିଦ୍ୟାମାନଙ୍କର ସାଧନାରେ ନିୟମୀ ହୋଇ ଏହି ନିର୍ଜନ ତପୋବନରେ ସମାଧିସ୍ଥ ହୋଇଅଛନ୍ତି; କିନ୍ତୁ ମୁଁ ବିଘ୍ନରାଜ,ନାନା ପ୍ରକାର ବିଘ୍ନ ପ୍ରଦର୍ଶନ କରି ମହର୍ଷିଙ୍କୁ ନିୟମଭ୍ରଷ୍ଟ କରିବି। ବିଦ୍ୟାମାନେ ଅତ୍ୟଳ୍ପ କାଳ ମଧ୍ୟରେ ମହର୍ଷିଙ୍କଠାରେ ଆବଦ୍ଧ ହେବେ। ସେହି ବିଦ୍ୟାମାନେ ରୂପବତୀ ହୋଇ ତପୋବନରେ ପ୍ରବେଶ କରିଅଛନ୍ତି। କି ଉପାୟରେ ବିଘ୍ନଦ୍ୱାରା ମହର୍ଷିଙ୍କ ତପସ୍ୟାରେ ବ୍ୟାଘାତ କରିବି, ସ୍ଥିର କରିପାରୁନାହିଁ। ବିଦ୍ୟାମାନେ ମାୟାବିନୀ, ସହଜରେ ବିଶ୍ୱାମିତ୍ରଙ୍କର ବଶୀଭୂତ ହେବେ କି ନାହିଁ ବିଶ୍ୱାସ ହେଉନାହିଁ। ମହର୍ଷି ନିୟମୀ ହୋଇ ବାକ୍ୟ, ମନ ଓ କୋଧ ସଂଯମ କରି ଅଛନ୍ତି। ଇନ୍ଦ୍ରାଦି ସଂଯମୀ, ପ୍ରଚଣ୍ଡ ପ୍ରକୃତି ବିଶ୍ୱାମିତ୍ରଙ୍କ ଅଭିଶାପ ଭୟରେ ଅଗ୍ରସର ହେବାକୁ ସାହସ ହେଉନାହିଁ। ତଥାପି କୌଶଳରେ ବିଦ୍ୟାମାନଙ୍କ ସହାୟତା ନେଇ, ମୃଗୟାବିହାରୀ ଆଶ୍ରମ ନିକଟସ୍ଥ ମହାରାଜ ହରିଶ୍ଚନ୍ଦ୍ରଙ୍କ ଦେହରେ ଆବିର୍ଭୂତ ହେବି। ଏବଂ ରାଜାଙ୍କୁ ଗର୍ବ ବାକ୍ୟରେ ମୁଗ୍ଧ କରିବି। ବିଦ୍ୟାମାନେ 'ପରିତ୍ରାଣ କର', 'ପରିତ୍ରାଣ କର' ଏତିକି କହି ଉଚ୍ଚସ୍ୱରରେ କ୍ରନ୍ଦନ କରିବେ। (ପ୍ରସ୍ଥାନ)

[କିଛିକ୍ଷଣ ପରେ ବିଦ୍ୟାମାନଙ୍କର ଆକାଶ ପଥରେ ପ୍ରବେଶ ଓ ନୃତ୍ୟ ସହ ଗୀତ]

ଶ୍ୟାମ ସୁନ୍ଦର ହରି. ଭୁବନ, ପାବନ ହେ,
ଆରତ ହୃଦ ନିଳୟ, ମଳୟ ପବନ ହେ,
[ଉଚ୍ଚସ୍ୱରେ] ରକ୍ଷାକର ହା ବିଧି ! ରକ୍ଷାକର !

[ନେପଥ୍ୟେ]

ହରିଶ୍ଚନ୍ଦ୍ର—ଆହା ରମଣୀ କଣ୍ଠ ପ୍ରାୟ ଶୁଭୁଅଛି । ସାରଥି ! କିଛି ଦୂରରେ ରମଣୀମାନେ କାତର ହୋଇ ରୋଦନ କରୁଅଛନ୍ତି—ଶୁଣୁଛି କି? ଏହି ସ୍ଥାନରୁ ପଦବ୍ରଜରେ ଯାଇ ସେମାନଙ୍କୁ ରକ୍ଷାକରିବି । ତୁମ୍ଭେ ଏହିଠାରେ ରଥ ସହିତ ଅବସ୍ଥାନ କର—ମୁଁ ଶୀଘ୍ର ଫେରି ଆସିବି ।

[ପୁନଶ୍ଚ ବିଦ୍ୟାମାନଙ୍କର ଗୀତ]

ବିପଦ ଭଞ୍ଜନ ପ୍ରଭୁ, ଅଖିଳ ସଂସାର ବିଭୁ
ପାପ, ତାପ, ଶୋକସିନ୍ଧୁ ତାରଣ କାରଣ ହେ ।
କରୁଣା ନିଧି ଜଳଧି—ଶୟନ ଅନନ୍ତ, ବିଧି,
ବିଷାଦ ନିଶି ନାଶନ ବରୁଣ ଅରୁଣ ହେ ।
ଦାନବ ଦର୍ପ ଦଳନ ସନାତନ ନିରଞ୍ଜନ,
ଭକତ କୁମୁଦ-ମୁଦ ଚନ୍ଦ୍ରମା କିରଣ ହେ !
ରକ୍ଷାକର ! ରକ୍ଷାକର ! ହା ଦୈବ ! ରକ୍ଷାକର !

(ମହାରାଜା ହରିଶ୍ଚନ୍ଦ୍ରଙ୍କର ପ୍ରବେଶ)

ହରିଶ୍ଚନ୍ଦ୍ର—ଯେଉଁ ହରିଶ୍ଚନ୍ଦ୍ରର ଦ୍ୱାରଦେଶରେ ଦଶଦିଗପାଳମାନେ ସଶସ୍ତ୍ର, ବଜ୍ରପାଣି ଇନ୍ଦ୍ରଦେବ ଯାହାର ପ୍ରତାପ ସ୍ମରଣ କରି ନିଜକୁ ତୁଚ୍ଛ ଜ୍ଞାନ କରନ୍ତି, କାହାର ଆଶ୍ଚର୍ଯ୍ୟ, କେଉଁ ପାପାତ୍ମା,ମୂଢ଼, ଦୁରାତ୍ମା

ବ୍ୟକ୍ତି,ସେହି ରାଜ୍ୟରେ ଥାଇ - ଅବଳାମାନଙ୍କ ପ୍ରତି ଅନୁଷ୍ଠାଚରଣ କରୁଅଛି ? (ବିଦ୍ୟାମାନଙ୍କ ପ୍ରତି) ତୁମ୍ଭେମାନେ କାତର ହୋଇ କନ୍ଦନ କରୁଥିଲ ?

ବିଦ୍ୟାମାନେ—ମହାରାଜ ! ଆମ୍ଭେମାନେ ଆବଦ୍ଧ ହୋଇଅଛୁ । ମୁକ୍ତ କରନ୍ତୁ ।

ହରିଶ୍ଚନ୍ଦ୍ର—କେଉଁ ପାପାତ୍ମା ମୂଢ଼ ଅଗ୍ନିକୁ ବସ୍ତ୍ରାଞ୍ଚଳରେ ବାନ୍ଧିବା ପ୍ରାୟ ମୋର ଶାସନ ଭିତର ବିରୁଦ୍ଧ କାର୍ଯ୍ୟ କରିଅଛି । ନିଶ୍ଚୟ ତାହାର ମସ୍ତକ ଛେଦନ କରି ଆଜ ତାହାକୁ ଶମନ ସଦନକୁ ପ୍ରେରଣ କରିବ । [ବନ୍ଧନ ମୋଚନ କରିବାକୁ ଉଦ୍ୟତ]

ବିଶ୍ୱାମିତ୍ର—[ପୃଷ୍ଠଦେଶରୁ]—ପାପିଷ୍ଠ ! କ୍ଷଣେ ରହ । ଆଜ ତାପସ ଅଗ୍ନିରେ ଭସ୍ମୀଭୂତ ହେବୁ ।

ବିଦ୍ୟାଗଣ—ତପସ୍ୟା ଭଙ୍ଗ ହେଲା । ମହର୍ଷିଙ୍କର କ୍ରୋଧ ହେଲା ।

[ହସି ହସି ଆକାଶ ମାର୍ଗରେ ପ୍ରସ୍ଥାନ]

ହରିଶ୍ଚନ୍ଦ୍ର—କି ଆଶ୍ଚର୍ଯ୍ୟ ! କି ଆଶ୍ଚର୍ଯ୍ୟ ! କି ମାୟା !

ବିଶ୍ୱାମିତ୍ର—[କ୍ରୋଧରେ ଉଠିଆସି]

ଶାର୍ଦ୍ଦୂଳ ମୁଖକୁ ଆସି ତୁହି ନରାଧମ;
ଯିବୁ କାହିଁ ଏକ ପାଦ ?
ବାକ୍ୟ ବାଣେ ତୋର,
ରୋଧିବ ଚରଣ, ହସ୍ତ, ଶରୀର ସ୍ପନ୍ଦନ ।
ପିଶାଚ, ବର୍ବର, ତୁହି ନୃପ କୁଳାଙ୍ଗାର
ଜାଣିକ ନ ଥିଲୁ, ତୁହି ମୂଷିକ ହୋଇଣ
ହର୍ଯ୍ୟକ୍ଷ ଗହ୍ୱରେ ପଶି ବାକ୍ୟ ଆସ୍ଫାଳନ
ବୃଥା ଆଡ଼ମ୍ବର ମାତ୍ର !
ପିଣ୍ଡୀଶୂର, ଖଳ !

ଧରି ଖଡ୍‌ଗ, ଶରାସନ ।
ଯେ ତପ ବଳରେ ସ୍ୱର୍ଗ, ନରକ, ଧରଣୀ
ଲୀନ ହେବ ବାକ୍ୟେ,
ଯାହାର କ୍ରୋଧ ବହ୍ନିରେ ଜଳିବ ଅଚିରେ,
କୋଟି ରାଜ୍ୟ ତୋର,
କୋଟି ହରିଶ୍ଚନ୍ଦ୍ର ସହ;
ଯାହାର ପ୍ରତାପେ ସୂର୍ଯ୍ୟ ସୂର୍ଯ୍ୟବଂଶ ଗ୍ଳାନି
ଲୁଚିବେ ହୃଦରେ ମୋର,
ଆଉଁ ସେହି ମୁନି
କି ଗର୍ବରେ ଆରେ ପାପିଷ୍ଠ ଅଧମ
ମୂଢ଼ ହରିଶ୍ଚନ୍ଦ୍ର ରାଜ ଆସିଥିଲୁ ଏ ଆଶ୍ରମେ ?
କି କାରଣେ ସହସ୍ର ବରଷବ୍ୟାପୀ ତପସ୍ୟା ମୋହର
ଭଗ୍ନହେଲା ଶୁଣି ତୋର ପୁରୁଷ ବଚନ ।

ରାଜା—ଅମିତ ତେଜସ୍ୱୀ ଧୀର ତପସ୍ୱୀ ପ୍ରବର
ତ୍ରିଲୋକ ପୂଜନକାରୀ ବିଶ୍ୱାମିତ୍ର ସହ,
କାହାର ଧୃଷ୍ଟତା ଯୁଝେ କରିବ ସାହସ ?
ପ୍ରଭୋ ! ଅଜ୍ଞାନତା ଦୋଷେ;
ଅପରାଧୀ ମୁହିଁ ।
ତପସ୍ୱୀ ଆଶ୍ରମ ବୋଲି ନ ଜାଣିଲି ଦଣ୍ଡେ,
ଆରତ ଦୁଃଖ ମୋଚନ ନରପତି ଧର୍ମ ।
ବିପ୍ର, ବୃଦ୍ଧ, ନାରୀ, ଶିଶୁ ପରିତ୍ରାଣ ଅର୍ଥେ,
କ୍ଷତ୍ରିୟ ପରାଣ ଧନ୍ୟ ନଶ୍ୱର ଶରୀରେ ।
ରମଣୀ କରୁଣ ସ୍ୱନେ କାତର ହୋଇଣ
ରକ୍ଷାକର ! ରକ୍ଷାକର କହି ଶୋକଭରେ
ଆଣିଲେ ଏ ସ୍ଥାନେ ମୋତେ

ହରିଶ୍ଚନ୍ଦ୍ର

ଆକର୍ଷିଲା ପ୍ରାନ୍ତ—
ବଂଶୀଧ୍ୱନି କୁରଙ୍ଗକୁ ।
ସେ ବେଦନ ଶୁଣି—
ମୃଗୟା ବ୍ୟସନେ ଯେବେ ରହିଥାନ୍ତି ସୁଖେ,
ହୋଇଥାନ୍ତି ପାପଭାଗୀ, ଅଧର୍ମ ଯଶସ୍ୱୀ
ଅଜ୍ଞାନଜନିତ ଦୋଷ କ୍ଷମଣୀୟ ଜାଣି
ତପୋବନ୍ଦ୍ର ଅପରାଧ କରନ୍ତୁ ମାର୍ଜନା !
[ପଦସ୍ପର୍ଶ କରି ଉପବେଶନ]

ବିଶ୍ୱାମିତ୍ର—ହୋମାଗ୍ନିରେ ନିପତିତ ଭଲ୍ଲୁକ ପରାଗ୍ରେ,
ବହ୍ନିକାଶ ସ୍ୱୟଂ ଦଗ୍ଧ ହୋଇଛୁ ଅଯତ୍ନେ
ଉଠ, ଉଠ, ଧର୍ମନିଷ୍ଠ ସମିଧ ସଦୃଶ
କୋପାନଳେ ପରୀକ୍ଷିତ ହୋଇବ ରାଜନ ।
[ରାଜାଙ୍କର ଉତ୍‌ଥାନ]

ତପୋବନେ ଭବଅଛ ବିଦ୍ୟାଗଣ ବନେ
ସ୍ୱୟଂ ସମାଗତ ହୋଇ ସ୍ତୁତକ ପରାଣେ—
ନୀରବ ଛାୟା ସଦୃଶ ବସିଥିଲେ ମୋତେ ।
ଯେମନ୍ତ ପ୍ରଚଣ୍ଡ ବାତ ବିଳୀନ କରାଏ
ନୀଳାକାଶେ ମେଘମାଳ
ତେମନ୍ତ ତୋ ଦର୍ପ ବିନାଶିଲା ବିଦ୍ୟାଗଣେ,
ତପସ୍ୟାର ଲକ୍ଷ୍ୟ ।

ହରିଶ୍ଚନ୍ଦ୍ର—କପରି ଜାଣିବ ପ୍ରଭୋ ! ନାରୀଗଣ କଣ୍ଠେ
କରିଲେ କ୍ରନ୍ଦନ ଧ୍ୱନି ?
କପରି ଜାଣିବ, କାହେ ଦୁଃଖ ମୋଚନେ
ବିଘ୍ନ ହୁଏ ତପେ ?

ବିଶ୍ୱାମିତ୍ର—ବାକ୍ୟପଟୁ ସୁଚତୁର ନୃପତିପୁଙ୍ଗବ !
ବଶିଷ୍ଠ ରୁ ରାଜନୀତି ପ୍ରତିମା ଆଲେଖ୍ୟ
କହ କହ ରାଜଧର୍ମ ଶୁଣିବି ତୋ ଠାରୁ
କହ ହେ ନୃପତି ଧର୍ମ ଜାଣୁ ଯଦି ତୁହି
ଦାନ ଯଜ୍ଞେ କିବା ଫଳ, କିବା ପ୍ରୟୋଜନ ?
କିଏ ଦାନଯୋଗ୍ୟ, ଦାତା, ରକ୍ଷଣୀୟ କେହୁ ?
ଧର୍ମ ଅର୍ଥେ କାହା ସଙ୍ଗେ ରଣକରେ ରାଜା ?

ହରିଶ୍ଚନ୍ଦ୍ର—ପ୍ରଜାହିତେ ନରପତି ପୃଥ୍ୱୀ ପାଳଇ
ପରିବାର ସୁଖପ୍ରିୟ ଜନକ ସଦୃଶ ।
ପ୍ରଜାହିତେ ଦାନଯଜ୍ଞ ଧରମ ସଞ୍ଚୟ ।
ସଞ୍ଚିତ ଧରମେ ପରିତୃପ୍ତ ପ୍ରଜାପୁଞ୍ଜ
ଘନଜଳେ ଯଥା ହୃଷ୍ଟ ପରିପୁଷ୍ଟ ଶସ୍ୟ ।
ଧର୍ମବଳେ ବଳୀୟାନ ନୃପତି ଦେଖଇ
କୋଟି ପ୍ରଜା ମୁଷ୍ଟିମେୟ କରଗତ ରାଜ୍ୟ ।
ଅଧର୍ମେ ନୃପତି ପ୍ରଜା ଇହ ପରଲୋକେ
ଭୁଞ୍ଜନ୍ତି ଅଶାନ୍ତି,
ତପୋଧନ ଶିରୋମଣି !
ରାଜା ପ୍ରଜା ଉପକୃତ ନୁହେଁ ଦାନ ଯଜ୍ଞେ
ବିପ୍ରଶ୍ରେଷ୍ଠ, ନିଃସ୍ୱ ଯାନ ଦାନ ଅଧିକାରୀ ।
ଶ୍ରଦ୍ଧାଳୁ, ଧାର୍ମିକ, ସତ୍ୟ, ନିଷ୍ଠାପର ଦାତା ।
ନିରସ୍ତ୍ର ଶରଣାପନ୍ନ ଭୀତ ପାଳନୀୟ ।
ପ୍ରଜାହିତେ ପରିପନ୍ଥୀ ଆହବେ ହନ୍ତବ୍ୟ !

ବିଶ୍ୱାମିତ୍ର:—ମଧୁର ଆଳାପେ ନୃପ ଭୁଲାଉଛୁ ମନ ।
କିନ୍ତୁ ଯଦି ଦର୍ପଭରେ ବକ୍ଷ ସ୍ଫୀତ କର

ସହସ୍ର ବର୍ଷ ବ୍ୟାପୀ ତପସ୍ୟା ମୋହର
ଭଗ୍ନ କରିଥିବୁ ଦୁଷ୍ଟ, ନିଶ୍ଚୟ ଅଚିରେ ।
କରିବ ପଥିକ ତୋତେ ନାରକୀୟ ପଥେ ।
ପଣ୍ଡିତ ସଦ୍ଗୁଣ ଧର୍ମ କହୁଛୁ ମୋ ଆଗେ,
କରିବ ପରୀକ୍ଷା ଧର୍ମ ସତ୍ୟ ନିଷ୍ଠା ତୋର ।

ସୁଜାତ ସୁବର୍ଣ୍ଣ ଦଗ୍ଧ ହୋଇଲେ ଅଗ୍ନିରେ,
ବିମଳ ଉଜ୍ଜ୍ୱଳ ହୋଇ ଆସଇ ତହିଁରୁ ।
କପଟ ଧାର୍ମିକ ରାଜା ବିନଷ୍ଟ ହୋଇବୁ ।
ସ୍ୱର୍ଣ୍ଣାଭ ପିତଳ ପ୍ରାୟେ ପରୀକ୍ଷା ଅନଳେ ।

ହରିଶ୍ଚନ୍ଦ୍ର—ଯଦି ଜ୍ଞାନକୃତ କୌଣସି ଅପରାଧରେ ମୁଁ ଆପଣାକୁ ଦୋଷୀ ବୋଲି ଜାଣିପାରନ୍ତି, ତାହାହେଲେ ଆପଣଙ୍କର ଏହି ରୂଢ଼ବାକ୍ୟମାନ ଚନ୍ଦନ ତୁଲ୍ୟ ଗ୍ରହଣକରି ଭବିଷ୍ୟତକୁ ସାବଧାନ ହୁଅନ୍ତି । ଯେପରି ଜଳରେ ଅଗ୍ନିକୁ ନିକ୍ଷେପକଲେ ଜଳର କୌଣସି କ୍ଷତି ହୁଏନାହିଁ; ବରଂ ଅଗ୍ନି ସ୍ୱୟଂ ନିର୍ବାପିତ ହୁଏ, ଯେପରି ହୋମାଗ୍ନିରେ ଚନ୍ଦନକାଷ୍ଠ ନିକ୍ଷେପକଲେ ଅଗ୍ନିର ଉଜ୍ଜ୍ୱଳତା ନଷ୍ଟ ନ ହୋଇ କାଷ୍ଠର ବକ୍ରତା ନଷ୍ଟ ହୁଏ, ସେହିପରି ଆପଣଙ୍କର କଟୂବାକ୍ୟ ମୋର ନିର୍ଦ୍ଦୋଷ ଦେହକୁ ଆଘାତ କରି କ୍ଷତିକାରକ କିମ୍ବା ଉପକାରକ ହୋଇପାରୁନାହିଁ ।

ବିଶ୍ୱାମିତ୍ର—ମହାରାଜ ! ପ୍ରସ୍ଥାନ କରନ୍ତୁ । ଆପଣଙ୍କର ଧର୍ମନୀତି ଶ୍ରବଣ କରି ବିଶେଷ ପରିତୁଷ୍ଟ ହୋଇଅଛୁ ।

ହରିଶ୍ଚନ୍ଦ୍ର—(ସ୍ୱଗତ) ସଞ୍ଜୀବନୀ ମନ୍ତ୍ରପ୍ରାୟ ଏହି ବାକ୍ୟ ମୋର ଦେହରେ ପ୍ରାଣ ସଞ୍ଚାରକଲା । ଅଜ୍ଞାନଜନିତ ଅପରାଧରେ ନିଜେ ମୁଁ ଲଜ୍ଜିତ ହୋଇଅଛୁ । (ପ୍ରକାଶ୍ୟେ) ପ୍ରଣାମ ।

ବିଶ୍ୱାମିତ୍ର—ବିଜୟୋସ୍ତୁ ମହାରାଜ ! କଲ୍ୟାଣମସ୍ତୁ ! (ରାଜାଙ୍କର ପ୍ରସ୍ଥାନ)
(ସଂଗତ ହର୍ଷ ଭରେ) ସାଧୁ ସାଧୁ ମହାରାଜ ! ଅଳ୍ପଦିନ ମଧ୍ୟରେ ଆପଣଙ୍କ ସହିତ ପୁନଃ ସାକ୍ଷାତ କରିବି । ଆଜିରେ ଧ୍ୟାନ ବଳରେ କଳିକୁ ଆହ୍ୱାନକରି ରାଜ୍ୟକୁ ପ୍ରେରଣ କରିବି । ମୃଗୟାରୁ ଫେରିବା ପୂର୍ବରୁ ବିଶ୍ୱକର୍ମା କଳି ପତାକା, ତୋରଣ, ପୁଷ୍ପମାଳ୍ୟ ଦ୍ୱାରା ଆଗରୁ ଅଭ୍ୟର୍ଥିତ ହେବ । [ପ୍ରସ୍ଥାନ]



## ଦ୍ୱିତୀୟ ଦୃଶ୍ୟ

[କାଶୀଧାମ କକ୍ଷ, ମାଙ୍ଗଳ୍ୟର ପ୍ରବେଶ]

ମାଙ୍ଗଳ୍ୟ-ନାରାୟଣ ! ନାରାୟଣ !ଗୋବିନ୍ଦ ! ଗୋପାଳ ! କି ଭୟାନକ ସ୍ୱପ୍ନ ! ସକାଳୁ ଉଠି ସ୍ନାନକରି ହରିନାମ ସ୍ମରଣ କରୁଥାନ୍ତି,ତା ନ ହୋଇ ସେହି ସ୍ୱପ୍ନ କଥାଟା ବଳୁରି ବାନ୍ଧିଲା ପ୍ରାୟ ଗୃହପାଖରୁ ବନ୍ଧ ପକାଉଛୁ । (ଚୂନ, ଦୋକଡା ଟିକିଏ ଦଳି ମୁହଁରେ ପକାଇ), ଓହୋ ହୋ ହୋ ହୋ, କି ଅଘଟଣା କଥା ଶୁଣ ! ମୁଁ ଠିଆ ହୋଇଛୁ ପାଣି ମଝିରେ, ଗୁରୁଦେବ ବିଶ୍ୱାମିତ୍ର ମୁନି ଠିଆ ହୋଇଛନ୍ତି ହଡ଼ମୁଣ୍ଡରେ । ମୋ ହାତରେ ମୁଣ୍ଡି ଭଇଁସି ଜାଲ, ବାହୁଟିଆ କଣ୍ଠରେ ଦଣ୍ଡ ଖୁଣ୍ଟିଏ ଲମ୍ବମାନ, ପାଦରେ ଧବଳା ପଙ୍କ, ସର୍ବାଙ୍ଗରେ ଆଇଁଷ କଳଙ୍କ, ଆଉ ଗୁରୁଦେବ ଶୁଖିଲାରେ ଠିଆ-ଆଖି ତରିଟିଅ, ପାଦରେ ରତନ କଠଉ—ସ୍କନ୍ଧେ ପଇତା ଦାଉ ଦାଉ, ସର୍ବାଙ୍ଗେ ବସନ ନାଲିଆ—ଆଉ ମୋ ହାତେ ଶେହ୍ଲ, ବାଲିଆ ! ଛି ଛି ଛି ! କି ମିଥ୍ୟା ସ୍ୱପ୍ନ, କି ଦୁର୍ନାମ, କି ଅପମାନ ! ଗୁରୁ ଡାକୁଛନ୍ତି;

ମାଗଲା ! ମାଗଲା !! ମାଗଲା !!! ମୁଁ କହୁଛୁ ଆଜ୍ଞା ମୁଁ ସ୍ନା କରିନାହିଁ; କିନ୍ତୁ ଯେତେବେଳେ ବିଛଣାରୁ ଧଡ଼୍‌ପଡ଼୍ ହୋଇ ଉଠିଲି, ଯେତେବେଳେ ଘରପାଖ ଅଣ୍ଡାଳି ଉଣ୍ଡୁଳି ଜାଣିପାରିଲି ମୋ ପାଖରେ ଦଣ୍ଡୁରି ନାହିଁ, ତେତେବେଳେ ଜାଣିଲି ଏସବୁ ସ୍ୱପ୍ନକଥା । (ନେପଥ୍ୟକୁ ଗୁହିଁ) କିଏ ଅଛରେ ?

[ଭୃତ୍ୟର ପ୍ରବେଶ]

ଭୃତ୍ୟ—ଆଜ୍ଞା ସ୍ନାନ କରିବେନାହିଁ ?

ମାଗଲା—ନା, ନା, ନା, ସ୍ନାନ କରିବେନାହିଁ । ଆମ୍ଭେ ସ୍ନାନ କରିବୁ ନାହିଁ । ଯା ଜଳଖିଆ ଆଣିବାକୁ କହିଦେ । କାଲି ରାତ୍ରିରେ ସ୍ୱପ୍ନରେ ଗୁରୁଙ୍କର ଦର୍ଶନ, ସକାଳୁ ଉଠି ମୂର୍ତ୍ତିଏ ପେଟ୍ଟ ଦର୍ଶନ, ପେଟରେ ଆମ୍ବ କବଚ ବନ୍ଧନ, ବେଶି ଖାଇପାରିବି ନାହିଁ । କହିଦେବୁ-କେବଳ ମାତ୍ର ଲେମ୍ବାଏ ପୁରି, ତନପା ଅଦାଜ ମହନ-ଭୋଗ ପଠାଇଦେବେ । ଆଚ୍ଛା ବୁଝ, ବୁଝ, ପାଏ ମହନଭୋଗ ହେଲେ ଚଳିପାରିବ । (ଭୃତ୍ୟର ପ୍ରସ୍ଥାନ)

(ମସ୍ତକରେ ଜଳ ସେଚନ କରି) ଓଁ ଅପବିତ୍ର ପବିତ୍ରୋବା, ସର୍ବାବସ୍ଥାଂ ଗତୋଽପିବା—ସେଇଠୁଁ କ'ଣଟି ? ମ'ମ ! ମନ୍ତ୍ର କାଣ୍ଡିକତ ମନରେ ପଡ଼ୁନାହିଁ । ମନ୍ତ୍ର ସ୍ନାନ ଇତଶ୍ରୀ, (ଆସନରେ ଉପବେଶନ । ଭୃତ୍ୟ ଜଳଖିଆ ସାମଗ୍ରୀ ସମ୍ମୁଖରେ ରଖି ପ୍ରସ୍ଥାନ । (ଗଣ୍ଡେ ପୁରି ଖାଇସାରି) ବ୍ୟାକରଣ ରୂପ ଜଙ୍ଗଲରେ ନ ପଶି ଣ, ଷ, ସ, ହ୍ରସ୍ୱ ଇକାର ଦୀର୍ଘଇକାର ବନାନ ରୂପ ଅଗ୍ନି ଧାପରେ ଠିଆ ନ ହୋଇ, ଯିଏ କେହି ପଣ୍ଡିତପଣିଆର ସୁଖଭୋଗ କରିଅଛି; ସେ ମୁଁ । ଗୋଡ ନ ଧୋଇ, ମନ୍ତ୍ର ସ୍ନାନ ପାସୋରି ପକାଇ, ଦନ୍ତ, ମୁଖ ଆଦି ଦରଧୁଆ କରି ଯିଏ କେହି ଖାଇବାର ସୁଖ ପାଇଥାଏ, ସେ ମୁଁ ।

ଭୃତ୍ୟ—[ପୁନଃ ପ୍ରବେଶ କରି] ଆଜ୍ଞା, ମୁଁ ଦେଖିଆସିଲି, ବଶିଷ୍ଠ ମୁନି ଆସୁଅଛନ୍ତି ।

ମାଙ୍ଗଲ୍ୟ—[ଆହାର ମୁଖରେ ରଖି ଆସନରୁ ଇତସ୍ତତଃ ଦୌଡ଼ି] ଆଁ ଆଁ, ଏଁ ! କଣ କହିଲୁ ? ବଶିଷ୍ଠ ମୁନି ! ଊ ଭଳକରି ଚହ୍ନୁଛୁ ?

ଭୃତ୍ୟ—ଆଜ୍ଞା ହଁ, ସେ ନିଶ୍ଚୟ ବଶିଷ୍ଠ ମୁନି । ଆମ ଘରଆଡ଼କୁ ଆସୁଛନ୍ତି ।

ମାଙ୍ଗଲ୍ୟ—[ଇତସ୍ତତଃ ହୋଇ] କ'ଣ କରିବ ? କଣ କରିବ ? ବଡ଼ ବେସବୁର କଥା ।

[ନେପଥ୍ୟେ] —ମାଙ୍ଗଲ୍ୟ ! ମାଙ୍ଗଲ୍ୟ !

ମାଙ୍ଗଲ୍ୟ—ସ୍ୱପ୍ନରେ ମୁଣ୍ଡି ଭଉଁଣୀ କାଲି କଥା ସତ ଫଳିଲା । ବେ ! ଜବାବ ଦେ ବେ ? ଅକ୍‌କାମଣି ଠିଆହୋଇଛୁ କାହିଁକି ?

[ନେପଥ୍ୟେ] ମାଙ୍ଗଲ୍ୟ ! ମାଙ୍ଗଲ୍ୟ ! ମାଙ୍ଗଲ୍ୟ !

ଭୃତ୍ୟ—କଏ ସେ ?

ମାଙ୍ଗଲ୍ୟ—କଣ କହିଲୁ ? କଏ ସେ ? ସେ ପରି କହିବେ, ଆମେ ବଶିଷ୍ଠ ମୁନି ଅସିଛୁଁ । (ବଶିଷ୍ଠଙ୍କର ପ୍ରବେଶ) ବସିବା ହେଉନ୍ତୁ । (ଦର୍ଶକମାନଙ୍କ ଆଡ଼କୁ ଚାହିଁ) ନା, ଆଉ ଗିଳି ହେବ- ନାହିଁ । (ଅର୍ଦ୍ଧଭୁକ୍ତ ଆହାର ଉଦ୍‌ଗିରଣ)

ବଶିଷ୍ଠ—(ଆସନରେ ଉପବେଶନ କରି) ମାଙ୍ଗଲ୍ୟ ! ସମସ୍ତ କୁଶଳ ତ ?

ମାଙ୍ଗଲ୍ୟ—ମହାପ୍ରଭୁ ! ଆପଣଙ୍କ ଦୟାରୁ ସମସ୍ତ କୁଶଳ, କେବଳ ଆଜ ସକାଳୁ ପେଟ ଟିକଏ ଗଡ଼ବଡ଼ ଧରିଛୁ । ମୁଁ ଅତ୍ୟନ୍ତ ଅଶୁଚି । ହାତଯାକ ତେଲ ଲଗେଇଛୁ । ସ୍ନାନ କରିବାକୁ ଯାଉଥିଲି । ଆପଣଙ୍କୁ ପ୍ରଣାମ କରିପାରୁନାହିଁ । ଆପଣଙ୍କ ପାଦ ଧୌତ କରି ପାରିଲିନାହିଁ । (ଭୃତ୍ୟ ପ୍ରତି) ରେ,ରେ ! ଶୀଘ୍ର ଗୋଡ଼ ଧୋଇଦେ । ପାଣି ଆଣ ଯା, ସ୍ୱାକୁ ସବୁ ଉଠା ।

ବିଶ୍ୱାମିତ୍ର—ଏହି ସକଳ ସାମଗ୍ରୀ କାହା ସକାଶେ ପ୍ରସ୍ତୁତ ହୋଇଅଛି ?

ମାଙ୍ଗଲ୍ୟ—ଆଜ୍ଞା ମହାପ୍ରଭୁ ! ଗୃହକରମାନେ ଆଗରୁ କାମ ସାରିଦେଇ ଛୋଲେଇବାକୁ ଭଲପାନ୍ତି । ଆପଣ ସେଠାରୁ କ'ଣ ଖାଇବେ ?

ବିଶ୍ୱାମିତ୍ର—(ହସି ହସି କ୍ରୁଦ୍ଧ ହେଲା ପ୍ରାୟ) ମୂର୍ଖ ! ପାଷାଣ୍ଡ ! ତୁ ସଭ୍ୟ କଥା କେବେ ଶିଖିବୁ ?

ମାଙ୍ଗଲ୍ୟ—(ହାତଯୋଡ଼ି ଠିଆହୋଇ ଭୀତ ପ୍ରାୟ ଅଙ୍ଗ କମ୍ପ ପ୍ରଦର୍ଶନ) ମହାପ୍ରଭୁ ! ମୋର ଅପରାଧ ମାର୍ଜନା କରିବା ହେଉନ୍ତୁ ।

ବିଶ୍ୱାମିତ୍ର—ହୃଦୟ ସ୍ୱଚ୍ଛଥିଲେ ଭାଷାଗତ ଦୋଷ ସକାଶେ କ୍ଷତି ହୁଏନାହିଁ ।

ମାଙ୍ଗଲ୍ୟ—ଆଜ୍ଞା ! ପିଲାଦିନେ ବ୍ୟାକରଣ, ଅଭିଧାନ, ଅଳଙ୍କାର ନ ପଢ଼ିବାରୁ ମୋ କଥାଗୁଡ଼ାକ ବେଳେବେଳେ ଅଲଗା ଲାଗେ । ଭଗବାନ ହୃଦୟର ଶ୍ରଦ୍ଧା ଦେଖନ୍ତି । କାତର ସ୍ୱରରେ ଡାକିଲେ ଦର୍ଶନ ଦିଅନ୍ତି । ଆପଣଙ୍କଠାରୁ ଶୁଣିଛି । ମୋର ବିଶ୍ୱାସ, ପଣ୍ଡିତମାନଙ୍କର ଲମ୍ବାଲମ୍ବା ସମାସ ପଦ ଶୁଣି ଈଶ୍ୱର ଚମ୍ପଟ ମାରନ୍ତି !

ବିଶ୍ୱାମିତ୍ର—ଫେର କହିଲୁ, "ଈଶ୍ୱର ଚମ୍ପଟ ମାରନ୍ତି" ।

ମାଙ୍ଗଳ୍ୟ—ଆଜ୍ଞା, ଆଜ୍ଞା ! ଈଶ୍ୱର ଦିଅନ୍ତିନାହିଁ ବୋଲି କହିଥିଲେ ଭଲ ହୋଇଥାଆନ୍ତା । ବ୍ୟାକରଣ ପଢ଼ିଲିନାହିଁ । ଭୁଲ୍‌ଭୁଲ୍ ଚଢ଼େଇ ଧରିଲି । ତୁଣ୍ଡ ଶୁଦ୍ଧି ହେବ କୁଆଡ଼ୁ ? ଅଲଗା ଅଲଗା କଥାଗୁଡ଼ାକ ବାହାରି ପଡ଼ୁଛି, ଅକ୍ତିଆର କରି ପାରୁନାହିଁ ।

ବିଶ୍ୱାମିତ୍ର—ମାଙ୍ଗଳ୍ୟ ! ହିମାଳୟରେ ଆଶ୍ରମ କରିଥିଲି । ବହୁକାଳର ତପସ୍ୟାରେ ହରିଶ୍ଚନ୍ଦ୍ର ରାଜା ବିଘ୍ନ ଦେବାରୁ ଉଦ୍ଦେଶ୍ୟ ବିଫଳ ହୋଇଅଛି ।

ମାଙ୍ଗଳ୍ୟ—ତା'ହେଲେ ଆପଣଙ୍କୁ ଆମ୍ଭେମାନେ ସର୍ବଦା ଦର୍ଶନ କରି ସୁଖୀ-ହେବୁ; କିନ୍ତୁ ହରିଶ୍ଚନ୍ଦ୍ର ରାଜା ଆପଣଙ୍କର କ୍ରୋଧାଗ୍ନି ସମ୍ଭାଳି ପାରି ଜୀବିତ ଅଛି କି ?

ବିଶ୍ୱାମିତ୍ର—ରାଜା ନିଜର ଦୋଷ ସ୍ୱୀକାର କଲେନାହିଁ, ବରଂ ନିର୍ଦ୍ଦୋଷିତାର ପ୍ରମାଣ ଦେଲେ ।

ମାଙ୍ଗଳି—ରାଜା ମିଥ୍ୟାବାଦୀ ।

ବିଶ୍ୱାମିତ୍ର—ରାଜା ଗର୍ବାନ୍ଧ, ମିଥ୍ୟାବାଦୀ ହେଉ, ଅଥବା ସତ୍ୟସନ୍ଧ ହେଉ; ବିନା ପରୀକ୍ଷାରେ ତାଙ୍କୁ ଛାଡ଼ିଦେବ ନାହିଁ । ମୁଁ ବର୍ତ୍ତମାନ କଳିଯୁଗର ସୃଷ୍ଟି କରିଅଛି ।

ମାଙ୍ଗଳି—[ଆଶ୍ଚର୍ଯ୍ୟ ହୋଇ] କ'ଣ କଳିଯୁଗ କହିବା ହେଲେ ମୁଁ ଭଲକରି ଶୁଣିପାରିଲି ନାହିଁ ।

ବିଶ୍ୱାମିତ୍ର—[ଜୋର୍‌ରେ] କଳିଯୁଗର ସୃଷ୍ଟି କରିଅଛି । ବର୍ତ୍ତମାନ ସତ୍ୟଯୁଗ ଚାଲିଛି । ମୋ ଆଦେଶରେ କଳିଯୁଗର ସୃଷ୍ଟି ହୋଇଅଛି ।

ମାଙ୍ଗଳି—ମହାପ୍ରଭୁ ! ଦୋଷ କ୍ଷମାକରିବେ । ବିଧାତା କରେ । ମୁଣ୍ଡ ପିଟିପିଟି କେତେ କଷ୍ଟରେ ସତ୍ୟଯୁଗ ଚଳାଇଥିଲେ । ତା କାମକୁ ଘଣ୍ଟା ଚକଟା କରୁଛନ୍ତି କାହିଁକି ?

ବିଶ୍ୱାମିତ୍ର—ନା, ସୃଷ୍ଟି କାର୍ଯ୍ୟରେ ବାଧା ଦେବନାହିଁ । କେବଳ ଅଯୋଧ୍ୟା ନଗରୀରେ ଅଳ୍ପକାଳ ସକାଶେ କଳିଯୁଗ ପ୍ରାଦୁର୍ଭୂତ ହେବ । ରାଜା ଅତ୍ୟନ୍ତ ଉଦ୍‌ବିଗ୍ନ ହେବ; ମନରେ ଶାନ୍ତି ରହିବନାହିଁ । ସେହିକାଳରେ ମୋର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପାରିଲେ ତାହାର ଯଶ ସହସ୍ର ଗୁଣ ବଢ଼ିଯିବ । ନଚେତ୍ ସତ୍ୟଭ୍ରଷ୍ଟ ହୋଇ ଅଭିଶାପ ପ୍ରଭାବରେ ନରକଗାମୀ ହେବ । ମାଙ୍ଗଳି ! କାଲିରେ ତୁମ୍ଭେ ମୋ ସଙ୍ଗରେ ଅଯୋଧ୍ୟାକୁ ଯିବ ।

ମାଙ୍ଗଳି—ଯେ ଆଜ୍ଞା ! ଆପଣଙ୍କ ଆଦେଶ ପାଳନ କଲେ ମୋ ଗୋଡ଼ ହାତରୁ ବଥା ଛାଡ଼ିଯାଏ । ଆଜି ଦିନକ ମୋର ଏହି ଦଦରା ଗୃହରେ ଦୟାକରି ଘରକୁ ପବିତ୍ର କରନ୍ତୁ ।

[ବିଶ୍ୱାମିତ୍ର, ମାଙ୍ଗଳି ଉଭୟଙ୍କର ପ୍ରସ୍ଥାନ, ପଟକ୍ଷେପଣ]



# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ରାଜସଭା]

[ମହାରାଜ ହରିଶ୍ଚନ୍ଦ୍ର, ପାଞ୍ଚ ଅମାତ୍ୟ ସହିତ ଆସୀନ]

୧ମ ମନ୍ତ୍ରୀ—ଯାହାର ଅମର କୀର୍ତ୍ତି ସତ୍ୟ, ଧର୍ମନିଷ୍ଠା
ସୁରଗ ପ୍ରତିଷ୍ଠା ରୁଦ୍ଧ କରିଥିଲା ମର୍ତ୍ତ୍ୟେ,
ଯାହାର ପ୍ରତାପେ ଅର୍କ ଦିଶୁଥିଲେ ମ୍ଳାନ
ଦିଗପାଳ ଦର୍ପହୀନ, ଅଯୋଧ୍ୟା ମଣ୍ଡନ
ସେହି ନରପତି ଆଜି ସ୍ୱନଗର ଶାନ୍ତି
ରକ୍ଷଣେ ଅକ୍ଷମ ।
କି ଆଶ୍ଚର୍ଯ୍ୟ ଦୈବଗତି !
ଯାଗ ଯଜ୍ଞେ ପରିତୁଷ୍ଟ ଇନ୍ଦ୍ରାଦି ଅମରେ
ରୁଷ୍ଟ କମ୍ପା ଆଜି ?
ପ୍ରଚଣ୍ଡ ମାର୍ତ୍ତଣ୍ଡ ତାପେ ସନ୍ତପ୍ତା ଧରଣୀ
ସୁସ୍ଥ ଏ ଦୁର୍ଭିକ୍ଷ ପୀଡ଼ା !
ଜ୍ଞାତ ବିଦ୍ୟା ବିଶାରଦ ବିପ୍ରବରଗଣେ,
ଦୈବସ୍ୱତ, ଧର୍ମବୁଦ୍ଧି, ତଥାପି କାହିଁକି ?
କଳଙ୍କିତ ଧର୍ମାସନ, ଧ୍ୱସ୍ତ ରାଜଶିରୀ ?
ଶ୍ରୀମକାନ୍ତ ରାଜଗୁଣ, ଶାସିତ ହୃଦୟ
ଶାନ୍ତ ନାଗରକେ, ସ୍ୱଧର୍ମ ବିସ୍ମୃତ କମ୍ପା ?
ସ୍ୱପର ସ୍ୱପର କାହିଁ ଗ୍ରାସିବାକୁ ଦେବ
ଆସିଛି କି ରାହୁ ଅକାଳରେ ତବ ରାଜ୍ୟେ ?

ବସନ୍ତ ଉତ୍ସବ ବନେ ଦୁର୍ଦ୍ଦିନ ପ୍ରସଙ୍ଗ
ବିମଳ ଆକାଶ ପଥେ ବଜ୍ରପାତ ପ୍ରାୟେ
ମଣଇ ରାଜନ, ଏ ରାଜ୍ୟ ବିପ୍ଲବ ଧ୍ୱଜ ।

ରାଜା—ମନ୍ତ୍ରିବର ! ପ୍ରଜାସୁଖ ରାଜଗୁଣେ ସୃଷ୍ଟ
ରାଜଶକ୍ତି ସତ୍ୟଧର୍ମ ଅର୍ଥଶାନ ରୂପା
ପ୍ରଜା ଯହିଁ ଧର୍ମଦ୍ରୋହୀ ଦୁଃଖଭୋଗୀ ଦୁଷ୍ଟ
ଅଯୋଧ୍ୟା ନୃପତିକୁଳ ଅର୍କମାଳା ମଧ୍ୟେ
ରହିଛ କୀର୍ତ୍ତି ପ୍ରାପ୍ତ ମଣଇ ନିଜକୁ,
ମିତ୍ର ! ଅନବଦ୍ୟ ଶାନ୍ତ ନୀତି, ଧର୍ମ ନୀତି ଯହିଁ
ବିମଳ ଭାସ୍କର ସମ ଯଦ୍ୟପି ମୋ ଯଶ
କି ପାଇଁ ବିଘ୍ନ ଉଲ୍କା ଦିବସେ ଉଦିତ ?

ମନ୍ତ୍ରୀ—ଶୁଣା ଯାଏ ସ୍ୱର୍ଗସମ ବଣେ ଧରାଲୋକ
କିନ୍ତୁ ମର୍ତ୍ତ୍ୟ ବୋଲି ପରିଚିତ, ଧର୍ମବଳେ
ବଳବାନ୍ ମର୍ତ୍ତ୍ୟବାସୀ ନର ସଞ୍ଚେ ପୁଣ୍ୟରାଶି ।
ଫଳେ ତାହା ଦିବ୍ୟଲୋକେ ଅନ୍ତିମେ ମରଣେ ।
ନରଜନ୍ମ ଦୈବାଧୀନ କର୍ମଭୋଗ ପାଇଁ,
ରାଜଲକ୍ଷ୍ମୀ ହତଶ୍ରୀ ହୋଇଲା କାହିଁକି ?
ଏ ପ୍ରଶ୍ନ ଦଇବ ସାକ୍ଷୀ, କିଏ ନ ଜାଣଇ
ମହାରାଜ ହରିଶ୍ଚନ୍ଦ୍ର ଧର୍ମରାଜ ସମ
ତ୍ରିଲୋକବିଦିତ କୀର୍ତ୍ତି, ଯେଉଁ ଗୁଣ ବହି
ବିପତ୍ତି କାଳରେ ପ୍ରତିକାର ଅନୁଷ୍ଠାନ
ମନୁଷ୍ୟ ଆୟତ୍ତ, କିନ୍ତୁ ଫଳ ଦୈବାଧୀନ ।

[ନେପଥ୍ୟେ] ମହାରାଜ ରକ୍ଷାକର । ଦୋହି ମହାରାଜ ରକ୍ଷାକର ରକ୍ଷାକର
[ଦ୍ୱାରୀ ସହିତ ଜନୈକ ମହାଜନ ରକ୍ତାକ୍ତ କଳେବରରେ ପ୍ରବେଶ]

ପ୍ରଥମ ମହାଜନ—ପ୍ରଭୋ ! ଆଉ ଏ ରାଜ୍ୟରେ ରହିବା କଠିନ । ଚୋରମାନେ ପ୍ରବଳ ହୋଇଅଛନ୍ତି । ଆଜି ଦ୍ୱିପହର ସମୟରେ ଆମ୍ଭମାନଙ୍କୁ କ୍ଷତ ବିକ୍ଷତ କରି ଦସ୍ୟୁମାନେ ଆମ୍ଭମାନଙ୍କର ବାଣିଜ୍ୟ ଦ୍ରବ୍ୟ ଅପହରଣ କରିଅଛନ୍ତି ।

୨ୟ ମହାଜନ—ମହାରାଜ ! ରକ୍ଷାକର ! ରକ୍ଷାକର !

୩ୟ ମହାଜନ—ମହାରାଜ ! ରକ୍ଷାକର ! ନଗର ରକ୍ଷକମାନେ କର୍ଣ୍ଣପାତ କରୁନାହିଁ । ଚତୁର୍ଦ୍ଦିଗରେ ଚୋରି, ଅଶାନ୍ତି, ଅତ୍ୟାଚାର ।

ପ୍ରଥମ ମନ୍ତ୍ରୀ—ମିଥ୍ୟା ଏ ବଚନ, ଯଦି ସମ୍ରାଟ ପୂର୍ବରେ
ଏହି ନାଗରିକେ ଜୟଧ୍ୱନି ଉଚ୍ଚାରିବେ ।
ଉପହାର ହସ୍ତେ ଆସୁଥିଲେ ପ୍ରାସାଦକୁ
କପଟେ ଏବେଣି ମିଥ୍ୟା ରଟନେ ପ୍ରୟାସୀ
ଚୋର ଅତ୍ୟାଚାର ଭୟ କହନ୍ତି ଏ ସ୍ଥାନେ

ପ୍ରଥମ ମହାଜନ—ଦୋହି ମହାରାଜ ! ରକ୍ଷାକର ! ରକ୍ଷାକର ! ଆମ୍ଭେମାନେ କଦାପି ମିଥ୍ୟା କହିବାକୁ ଆସିନାହୁଁ ।

ହରିଶ୍ଚନ୍ଦ୍ର—ତୁମ୍ଭେମାନେ ନିଜ ନିଜର ବାସସ୍ଥାନ ନାମାଦି ମନ୍ତ୍ରୀଙ୍କ କାର୍ଯ୍ୟାଳୟରେ ବ୍ୟକ୍ତ କର । ଅତି ଶୀଘ୍ର ସେ ବିଷୟରେ ପ୍ରତିକାର କରିବି । ଦୁଃଖିତ ବା କାତର ହେବନାହିଁ । ତୁମ୍ଭମାନଙ୍କ ରାଜା ପ୍ରଜାହିତ ସକାଶେ ପ୍ରାଣ ଦେବାକୁ ସର୍ବଦା ପ୍ରସ୍ତୁତ ।

ମହାଜନଗଣ—ଯେ ଆଜ୍ଞା ମହାରାଜ ! ଜୟ ହେଉ । ରାଜାଙ୍କର ଜୟ ହେଉ । [ପ୍ରସ୍ଥାନ]

ମନ୍ତ୍ରୀ—ମହାରାଜ ! ଏହି ଅଶାନ୍ତିର କାରଣ ଅନୁସନ୍ଧାନ କରିବାକୁ ଗଲେ ମୋର ବୁଦ୍ଧି ବୃତ୍ତି ଜଡ଼ ହୋଇଯାଏ । ଯେପରି କୌଣସି ଆକସ୍ମିକ ବିପଦଦ୍ୱାରା ଆମ୍ଭେମାନେ ଅତି ଶୀଘ୍ର ଅଭିଭୂତ ହେବୁ ।

ହରିଶ୍ଚନ୍ଦ୍ର—ଈଶ୍ୱରଙ୍କଠାରେ ଅଚଳା ଭକ୍ତି, ନିଜର କାର୍ଯ୍ୟକଳାପରେ ସ୍ୱଚ୍ଛତା ଏବଂ ପ୍ରଗାଢ଼ ଧର୍ମଭାବ ଥିବା ପର୍ଯ୍ୟନ୍ତ ମୋର ବିପଦକୁ ଡର ନାହିଁ ।

(ମହାରାଜ ! ରକ୍ଷାକର ! ରକ୍ଷାକର ! ଧର୍ମ ଲୋପ ହେଲା, ଯାଗଯଜ୍ଞ ଲୋପ ହେଲା, ରକ୍ଷାକର, ରକ୍ଷାକର) ଚିତ୍କାର କରି ଏକଦଳ ଅଗ୍ନିହୋତ୍ରୀ ବ୍ରାହ୍ମଣଦଳ ଦ୍ୱାରପଥ ପ୍ରବେଶ)

ହରିଶ୍ଚନ୍ଦ୍ର—(ପ୍ରଣାମାନ୍ତର) କି ସକାଶେ ଆପଣମାନଙ୍କର କାତରଭାବ ଲକ୍ଷ୍ୟ କରୁଅଛି । ଯାଗଯଜ୍ଞରେ କେଉଁ ରାକ୍ଷସ ବିଘ୍ନ ଦେଇଅଛି ?

ପ୍ରଥମ ବ୍ରାହ୍ମଣ—ମହାରାଜ ! ଆପଣଙ୍କ ରାଜ୍ୟବାସୀ କେତେକ ନାଗରିକ ଉନ୍ମତ୍ତ ହୋଇ ଯଜ୍ଞାଗାରରେ ମାଂସ ମଦିରାଦି ଭକ୍ଷଣକଲେ । ଆମ୍ଭେମାନେ ନିବାରଣ କରିବାରୁ ଆମ୍ଭମାନଙ୍କ ମସ୍ତିଷ୍କରେ ମଦିରା ଢାଳିଦେଇ ଉଚ୍ଛିଷ୍ଟ ମାଂସ ହୋମାଗ୍ନିରେ ନିକ୍ଷେପ କରି ପଳାୟନ କଲେ । ବୋଧ ହେଉଅଛି, ଯେପରି ସତ୍ୟଯୁଗ ଶେଷ ହୋଇ କଳିଯୁଗ ଉପସ୍ଥିତ ହୋଇଅଛି ।

ହରିଶ୍ଚନ୍ଦ୍ର-ଆପଣମାନେ ନିକଟବର୍ତ୍ତୀ ନଗରରକ୍ଷକମାନଙ୍କୁ ସେମାନଙ୍କୁ ଧରିବା ସକାଶେ ଅନୁରୋଧ କରିଥିଲେ କି ?

ବ୍ରାହ୍ମଣମାନେ—ନା ମହାରାଜ !

ହରିଶ୍ଚନ୍ଦ୍ର—ତାହାହେଲେ ଶୀଘ୍ର ପ୍ରତିକାରର ଉପାୟ ନାହିଁ । ନିର୍ଦ୍ଦୋଷ ଲୋକକୁ ଦଣ୍ଡ ଦିଆ ଯାଇ ପାରେନାହିଁ; କିନ୍ତୁ ମୁଁ ଏ ବିଷୟରେ ଅନୁସନ୍ଧାନ କରିବି । ଆପଣମାନେ ଫେରିଯାଆନ୍ତୁ ।

[ବ୍ରାହ୍ମଣମାନଙ୍କର ପ୍ରସ୍ଥାନ]

ମନ୍ତ୍ରିନ୍ ! ନାଗରିକମାନଙ୍କର ଦୁର୍ଦ୍ଦଶା ଏବଂ ଆକସ୍ମିକ ବିପଦରେ ଧୀମାନ୍ ବ୍ୟକ୍ତିମାନେ ମଧ୍ୟ ଧୈର୍ଯ୍ୟଚ୍ୟୁତ ହେବେ । ଜ୍ଞାନକୃତ ବା ଅଜ୍ଞାନକୃତ ଆମ୍ଭର ଏପରି କୌଣସି ଅପରାଧ ଅଛି କି ଯଦ୍ଦ୍ୱାରା ଏହି

ଦୈବପ୍ରେରିତ ବିପଦାଗ୍ନିରେ ଆମ୍ଭେମାନେ ସମସ୍ତେ ଭସ୍ମୀଭୂତ ହେବୁ

ପ୍ରଥମ ମନ୍ତ୍ରୀ—ମହାରାଜ ଅପରାଧ ଦୂରେ ଥାଉ; ତୁମ୍ଭଙ୍କର ପୂଣ୍ୟ ରାଶିରେ କି ମନୁଷ୍ୟ କି ଦେବତା ସମସ୍ତେ ପରିତୁଷ୍ଟ । କୌଣସି ଆସୁରିକ ମାୟା ଆମ୍ଭମାନଙ୍କୁ ଅଭିଭୂତ କରିଅଛି ।

ଦ୍ୱିତୀୟ ମନ୍ତ୍ରୀ—ବିପଦର ପ୍ରତିକାର ଅବଶ୍ୟ କର୍ତ୍ତବ୍ୟ । ସବ ଗ୍ରହ ଶାନ୍ତି ନିମିତ୍ତ ଯଜ୍ଞର ଅନୁଷ୍ଠାନ କରାଯାଇ ତୀବ୍ର ଦଣ୍ଡନୀତିର ଆଦେଶ କରାଯାଉ । ରାଜ୍ୟରେ ଆକସ୍ମିକ ଉତ୍ପାତ ହେଲେ କିମ୍ବା ବିଦ୍ରୋହର ସୂଚନା ହେଲେ ସାଧାରଣତଃ ଯେଉଁ ତୀବ୍ର ଦଣ୍ଡବିଧାନର ବ୍ୟବସ୍ଥା ଅଛି, ତାହା ଅବିଳମ୍ବରେ ଅବଲମ୍ବନ କରିବାକୁ ହେବ । କ୍ଷୋଭ ସମୟରେ ସମଗ୍ର ରାଜ୍ୟର ମଙ୍ଗଳ ସକାଶେ ଗୁରୁଦଣ୍ଡ କିମ୍ବା ସାମାନ୍ୟ ଦୋଷରେ ତୀବ୍ର ଶାସନ ଦୋଷାବହ ନୁହେଁ ।

ହରିଶ୍ଚନ୍ଦ୍ର—କିନ୍ତୁ କାରଣ ନିର୍ଣ୍ଣୟ ନ କରି ପ୍ରତିକାର କଲେ ନିଦାନ ଅନଭିଜ୍ଞ ଚିକିତ୍ସାରେ ରୋଗ ଚିକିତ୍ସା ପ୍ରାୟ ଆମ୍ଭେମାନେ ହାସ୍ୟାସ୍ପଦ ଓ ବିପଦଗ୍ରସ୍ତ ହେବୁ । ଆପଣ ଏହି ଉତ୍ପାତର କାରଣମାନ ଅନୁମାନଦ୍ୱାରା ସ୍ଥିର କରିଅଛନ୍ତି କି ?

ମନ୍ତ୍ରୀ—ଏହାର କାରଣ କଦାପି ରାକ୍ଷସୀ ମାୟା ନୁହେଁ । ରାକ୍ଷସୀ ମାୟା ହେଲେ ନଗରବାସୀମାନଙ୍କର ପୀଡ଼ା ହୁଅନ୍ତା । ସେମାନେ ଏତେ ଶୀଘ୍ର ଉନ୍ମତ୍ତ ହୁଅନ୍ତେ ନାହିଁ କିମ୍ବା ଧର୍ମପଥରୁ ବିଚଳିତ ହୁଅନ୍ତେ ନାହିଁ ।

ହରିଶ୍ଚନ୍ଦ୍ର—ଉପସ୍ଥିତ ଅବସ୍ଥାରେ ଆପଣଙ୍କ ପରାମର୍ଶ ଅନୁସାରେ କାର୍ଯ୍ୟ କରିବାକୁ ହେବ । କ୍ରମେ କ୍ରମେ ଏହି ଉତ୍ପାତର କାରଣମାନ ଜଣାପଡ଼ିବ । ମନ୍ଦିରାଙ୍ଗଣରେ ସଙ୍ଗୀତ ଧ୍ୱନି ଶ୍ରୁତିଗୋଚର ହେଉଅଛି ।

ମନ୍ତ୍ରୀ—ସମ୍ଭବତଃ ମହାରାଣୀ ବିଜେ ହୋଇଅଛନ୍ତି ।

[ନେପଥ୍ୟେ ଗୀତ]

ଚନ୍ଦ୍ର ଉଦିତରେ
ବିଷାଦ ଅବଶ ମାନସ କୁମୁଦ ତମ ବିଜଡ଼ିତରେ
ତାରକ କୁସୁମ ଫୁଟିଛି ଆକାଶେ ।
ଜୋଛନା ଲହରୀ ଭସେ ଦିଶେ ଦିଶେ ।
କି ପାଇଁ ହରଷେ
କି ଶୋକ ପରଶେ ।
ବଦନ ମଳିନରେ

ମଧୁ ଯାମିନୀରେ ବସନ୍ତ ସମୀରେ ଲତିକା ତାପିତରେ ।

[ସଖୀଜନ ପରିବେଷ୍ଟିତା ମହାରାଣୀ ଶୈବ୍ୟାଙ୍କର କୁମାର ରୋହିତାଶ୍ୱ ସହିତ ପ୍ରବେଶ । ସଭାସ୍ଥ ମନ୍ତ୍ରୀମାନଙ୍କଠାରୁ ସମ୍ମାନ ଗ୍ରହଣାନନ୍ତର ସିଂହାସନରେ ଉପବେଶନ]

ହରିଶ୍ଚନ୍ଦ୍ର—ଦେବି ! ସହସା ପ୍ରମୋଦ ଉଦ୍ୟାନ ତ୍ୟାଗ କି କାରଣ ସଭାକୁ ଆଗମନ କରିଅଛ ?

ରାଣୀ—ମହାରାଜ ! ପ୍ରମୋଦ ଉଦ୍ୟାନରେ ମାନସିକ ସୁଖ ନାହିଁ । ପ୍ରଜାମାନଙ୍କର ଦୁଃଖ ଧ୍ୱନି ସର୍ବଦା କର୍ଣ୍ଣରେ ଆଘାତ କରୁଅଛି । ମହାରାଜ ଆହାର ନିଦ୍ରା ପରିତ୍ୟାଗ କରି ସର୍ବଦା ରାଜକାର୍ଯ୍ୟରେ ବ୍ୟସ୍ତ ଅଛନ୍ତି ଜାଣି, ମୁଁ ମଧ୍ୟ ରାଜ୍ୟ ଏବଂ ଗୃହ ସମାଚାରରେ ଲିପ୍ତ ରହିବାକୁ ଇଚ୍ଛାକଲି । ରୋହିତାଶ୍ୱ ମୋ ନିକଟରେ ଶୋଇଥିଲା । ସହସା ସ୍ୱପ୍ନ ଦେଖି, 'ମା' 'ମା', ବୋଲି ଚିତ୍କାର କରିବାରୁ ମୋ ମନରେ ନାନା ପ୍ରକାର ଦୁଶ୍ଚିନ୍ତା ଜାତ ହେଉଅଛି ।

ହରିଶ୍ଚନ୍ଦ୍ର—ସ୍ୱପ୍ନ ବିଷୟମାନ ସାଧାରଣତଃ ମିଥ୍ୟା ଅଟେ । ତହିଁରେ ଏତେ ଦୁଃଖ କାହିଁକି ?

ରାଣୀ—ମହାରାଜ ! କିନ୍ତୁ ଏହି ସ୍ୱପ୍ନର ବିଷୟ ଶ୍ରବଣ କଲେ ପ୍ରାଣ ବିକମ୍ପିତ ହୁଏ ।

ହରିଶ୍ଚନ୍ଦ୍ର—[କୁମାର ପ୍ରତି] ବତ୍ସ ! କି ସ୍ୱପ୍ନ ଦେଖି ତୁମ୍ଭେ ଚମକି ଉଠିଲ ?

କୁମାର—ପିତଃ ! ସ୍ୱପ୍ନ ଦେଖିଲି, ଜଣେ ରାକ୍ଷସ—ତାର ରାଗ ଜଟା—ଦେଖିବାକୁ କଳା—ବଡ଼ ବଡ଼ ନଖ ଅଛି । ମା'ଙ୍କୁ, ମୋତେ, ଆପଣଙ୍କୁ ଆସି ଟାଣିଲା—ଟାଣି ନେଇ ବଣକୁ ଗଲା । ବଣରେ ଦୁଇ ଜାଗାରେ ନିଆଁ ଜଳୁଥିଲା । ମୁଁ ମାରିଲି । ଆପଣ ମାରିଲେ । ସେଇଠୁ କ'ଣ କଣ—ଓ—ମୁଁ ପେଲିଦେଲି—ସେ ଶୁଣିଲା ନାହିଁ । ସେଇଠୁ ମା'ଙ୍କୁ ମୋତେ ନିଆଁକୁ, ଆପଣଙ୍କୁ ଆଉ ଗୋଟିଏ ଜାଗାରେ ଯେଉଁ ନିଆଁ ଥିଲା, ସେହି ନିଆଁକୁ ଠେଲି-ଦେଲା । ମୋର ହାତ ଗୋଡ଼ ଚଳିଲା ନାହିଁ । ନିଆଁ ତାତ ଲାଗିଲା । ମୁଁ କାନ୍ଦିଲି, ମାକୁ ଡାକିଲି ।

ହରିଶ୍ଚନ୍ଦ୍ର—ଏହି ସ୍ୱପ୍ନ ସକାଶେ ତୁମ୍ଭେ ଭୀତ ହୋଇଅଛ ?

ରାଣୀ—ମହାରାଜ ! ସ୍ୱପ୍ନ ଶୁଣିଲା ବେଳରୁ ମୋର ମନ ସ୍ଥିର ହେଉନାହିଁ । ଆପଣଙ୍କୁ ଉଠାଇବା ସକାଶେ ଇଚ୍ଛା କରିଥିଲି; କିନ୍ତୁ ଦେବାର୍ଚ୍ଚନ କରି ଏହି ସଭାକୁ ଆସିଲି, ବିଜ୍ଞ ମନ୍ତ୍ରୀମାନେ କ'ଣ କହିବେ, ଶୁଣିବାକୁ ଇଚ୍ଛା ହେଉଅଛି ।

ଦ୍ୱିତୀୟ ମନ୍ତ୍ରୀ—ମହାରାଜ୍ଞି ! ସ୍ୱପ୍ନର ବିଷୟ ସମ୍ପୂର୍ଣ୍ଣ ମିଥ୍ୟା । ତ୍ରିପୁର ମଧ୍ୟରେ ଏପରି କେହି ଶୂର ନାହିଁ, ଯେ କି ପ୍ରବଳ ପ୍ରତାପୀ ଆଦିତ୍ୟ ସମ ମହାରାଜାଙ୍କୁ ଏତେ ଅଳ୍ପ ଆୟାସରେ ପରାସ୍ତ କରି ପାରିବ ; କିନ୍ତୁ ପ୍ରକାରାନ୍ତରରେ ଯଦି କୌଣସି ଆସନ୍ନ ବିପଦର ଆଶଙ୍କା ହେଉଅଛି,

ତାହାହେଲେ ଶାନ୍ତିହୋମ, ବ୍ରାହ୍ମଣରେ ଭୋଜନର ଅନୁଷ୍ଠାନ କରନ୍ତୁ । ମାନସିକ ସ୍ୱଚ୍ଛତା ଲାଭକରିବେ ।

ହରିଶ୍ଚନ୍ଦ୍ର—ଦେବ ! ଅକସ୍ମାତ୍ ରାଜ୍ୟରେ ଯେଉଁ ବିଶୃଙ୍ଖଳା ଘଟିଅଛି, ତାହା ସହିତ ଏହି ବିଷୟ ଯୋଜନା କଲେ କ୍ଷଣେ କ୍ଷଣେ ମୋର ବିଶ୍ୱାସ ହୁଏ ଯେ ରାଜ ପରିବାର ମଧ୍ୟ ବିପଦଗ୍ରସ୍ତ ହେବ । ନଗର ମଧ୍ୟରେ ଯେଉଁ ବ୍ୟକ୍ତିମାନେ ଶାନ୍ତ ଧର୍ମଶୀଳ ଓ ପୁଣ୍ୟବାନ୍ ବୋଲି ପରିଚିତ ହୋଇଥିଲେ, ସେମାନେ ଉଦ୍ଧତ ହୋଇଅଛନ୍ତି । ଯେଉଁ ରାଜ୍ୟରେ ଚୋରର ନାମ କେବଳ ( ଧର୍ମଗ୍ରନ୍ଥରେ ଆଲୋଚିତ ହେଉଥିଲା, ) ବର୍ତ୍ତମାନ ସେହି ରାଜ୍ୟ ଚୋରପୂର୍ଣ୍ଣ । ବ୍ରାହ୍ମଣମାନଙ୍କ ପ୍ରତି ଭକ୍ତି ଶ୍ରଦ୍ଧା ଦେଖାଇ ଯାଗ ଯଜ୍ଞ ହୋମାଦି କାର୍ଯ୍ୟରେ ବିଶେଷ ଆସ୍ଥା ରଖି ଯେଉଁମାନେ ଶ୍ରଦ୍ଧାଭାଜନ ହୋଇଥିଲେ, ସେମାନେ ବର୍ତ୍ତମାନ ବ୍ରାହ୍ମଣଦ୍ରୋହୀ ଓ ଯଜ୍ଞ ବିଘ୍ନକାରୀ ହୋଇଅଛନ୍ତି । ନଗର ରକ୍ଷକମାନେ ପିଶାଚ ବୃତ୍ତି ଅବଲମ୍ବନ କରି ଚୌର ପ୍ରଭୃତି ଦୁଷ୍ଟ ବ୍ୟକ୍ତି ମାନଙ୍କୁ ପ୍ରଶସ୍ତ ଦେଉଅଛନ୍ତି । ବିଚାରକଗଣ ଲୋଭଗ୍ରସ୍ତ ହୋଇ ଧର୍ମାସନ କଳଙ୍କିତ କରିଅଛନ୍ତି ଏବଂ ଅଳସତା, ଜଡ଼ତାଦ୍ୱାରା ଆପଣାଙ୍କୁ ମାନସ୍ୱାନ କରିଅଛନ୍ତି । ଏହି ବିପଦ ଅଗ୍ନିରେ ସନ୍ତପ୍ତ ହୋଇ ମୋର କ୍ଷଣ ମାତ୍ର ବିଶ୍ରାମ ନାହିଁ । (ମନ୍ତ୍ରୀଙ୍କ ପ୍ରତି) ମନ୍ତ୍ରିନ୍ ! ସେନାପତିଙ୍କୁ ଆଦେଶ କରିବ । ସତ୍ୱର କତିପୟ ସୈନିକ ଛଦ୍ମ ଅଧ୍ୟାବରରେ ମୋ ସହିତ ନଗର ଭ୍ରମଣ କରିବେ । ବର୍ତ୍ତମାନ ସଭା ଭଙ୍ଗ କର ।

[ସମସ୍ତଙ୍କର ଏକ ଦିଗରେ ପ୍ରସ୍ଥାନ, ରାଜା ରାଣୀ, ରୋହିତାଶ୍ୱର ଅନ୍ୟ ଦିଗରେ ପ୍ରସ୍ଥାନ]

—:ପଟକ୍ଷେପଣ:—



## ଦ୍ୱିତୀୟ ଦୃଶ୍ୟ

### [ରାଜପଥ]

[ବିଶ୍ୱାମିତ୍ର, ଶିଷ୍ୟ ମାନଙ୍କ ସହିତ ଦଣ୍ଡାୟମାନ]

ବିଶ୍ୱାମିତ୍ର—କଳିର ଶାସନ ଅଦ୍ଭୁତ ଓ ବିଚିତ୍ର । ଦେଖୁଛ ତ; କିପରି ସ୍ୱର୍ଗ-ପୁରୀ ସହିତ ଅଯୋଧ୍ୟା ନଗରୀ ଏକପକ୍ଷ ଅତୀତ ହୋଇନାହିଁ, ନରକ ପ୍ରାପ୍ତ ପ୍ରତୀୟମାନ ହେଉଅଛି; କିନ୍ତୁ ଆଉ ବେଶି ବିଳମ୍ବ କରିବିନାହିଁ । ମୋହରି ଆଦେଶରେ ହରିଶ୍ଚନ୍ଦ୍ରଙ୍କୁ ପରୀକ୍ଷା କରିବା ସକାଶେ କଳି ଯେପରି ଦୌରାତ୍ମ୍ୟ ଆରମ୍ଭ କରିଅଛି, ସେପରି ଆଉ କିଛି ଦିନ ପ୍ରଜାମାନଙ୍କର ପୀଡ଼ା ହେବ । ଯାହାହେଉ ବର୍ତ୍ତମାନ ଯେଉଁ ଯେଉଁ କ୍ଷତି ହୋଇଅଛି, ସେଥି ସକାଶେ ପ୍ରଜାମାନଙ୍କୁ ଇଚ୍ଛାନୁରୂପ ଆଶ୍ୱସନା ଦେଇ ପାରିବି ।

ଶିଷ୍ୟ—(ସ୍ୱଗତ) ଅଥବା ଦ୍ୱିତୀୟ କଳି ହୋଇ ପ୍ରଜାମାନଙ୍କର ଶନିଦଶା ଉପସ୍ଥିତ କରିବେ । (ପ୍ରକାଶ୍ୟେ) ଆପଣଙ୍କର ପରୀକ୍ଷା ଶେଷ ହୋଇଛି ତ ?

ବିଶ୍ୱାମିତ୍ର—ନାରାୟଣ-ନାରାୟଣ-ନାରାୟଣ ! ବର୍ଣ୍ଣମାଳାର ଆରମ୍ଭ ହୋଇ ନାହିଁ । ତୁମ୍ଭେମାନେ ଦେଖି ଦେଖି ଯାଉଥିବ । ପରୀକ୍ଷାର ଉତ୍ତାପ ରାଜାରାଣୀଙ୍କୁ ଏ ପର୍ଯ୍ୟନ୍ତ ସ୍ପର୍ଶ କରିନାହିଁ ।

ଶିଷ୍ୟ—ସର୍ବନାଶ ! ମହାରାଣୀଙ୍କୁ ପରୀକ୍ଷା ଦେବାକୁ ହେବ ।

ବିଶ୍ୱାମିତ୍ର—ତା ନହେଲେ ମହାରାଜଙ୍କୁ ଉତ୍ତାପ ଲାଗିବ କିପରି ? ରୋହିତାଶ୍ୱ ନାମକ କୁମାର ଅଛି । ସେ ମଧ୍ୟ ପରୀକ୍ଷିତ ହୋଇ ମହାରାଜାଙ୍କ ହୃଦୟରେ ଶୋକାଗ୍ନି ଜାଳିଦେବ ।

ଶିଷ୍ୟ—(ସ୍ୱଗତ) ଆପଣଙ୍କ ସାକ୍ଷାତ ଶନିଦଶା କହିଲେ ଚଳେ । (ପ୍ରକାଶ୍ୟେ) ହଁ; ବ୍ୟଞ୍ଜନରେ ଲୁଣ, ତେଲ, ବଡ଼ି ସବୁ ପ୍ରୟୋଜନ । ସମସ୍ତ ରାଜ ପରିବାର ଯାଣ୍ଡି ନ ହେଲେ ରୁଚିକର ହେବନାହିଁ; କିନ୍ତୁ ରାଜପ୍ରସାଦକୁ ବର୍ତ୍ତମାନ ଯିବେ କି ?

ବିଶ୍ୱାମିତ୍ର—ତୁମ୍ଭେ ହୃଦୟକୁ କିଞ୍ଚିତ୍ କଠୋର ନ କଲେ ଭଲ ହେବ-ନାହିଁ ।

ଶିଷ୍ୟ—ଆଜ୍ଞା ! ସେଥିଲାଗି ଚିନ୍ତିତ ହେବେନାହିଁ । ଆପଣଙ୍କ କୃପାରେ ହୃଦୟଟି ମୋର ଅଳ୍ପଦିନ ମଧ୍ୟରେ ଲୌହରେ ପରିଣତ ହେବାର ସମ୍ଭାବନା । ଦେଖନ୍ତୁ ! ଦେଖନ୍ତୁ ! ମହାରାଜ ଛଦ୍ମବେଶରେ ନଗରକୁ ବାହାରି ଅଛନ୍ତି । (ନେପଥ୍ୟକୁ ଉଭୟଙ୍କର ଦୃଷ୍ଟି)

ବିଶ୍ୱାମିତ୍ର—ଆଚ୍ଛା ଭଲ ହୋଇଛି । ବେଶ୍ୟାଳୟରେ ପୁରୋହିତଙ୍କୁ ଦେଖି ଯାଆନ୍ତୁ ।

ଶିଷ୍ୟ—ବେଶ୍ୟାଳୟରେ ପୁରୋହିତ ପୁତ୍ର ମଦ୍ୟପାନ କରି ନୀଚ ବ୍ୟକ୍ତିଙ୍କ-ସହିତ ସନ୍ଧ୍ୟା ବନ୍ଦନ କରୁଅଛନ୍ତି । ଦେଖନ୍ତୁ, ମହାରାଜ ଛଦ୍ମ-ବେଶଧାରୀ ରାଜପୁରୁଷଙ୍କ ସହିତ ବେଶ୍ୟା ମନ୍ଦିରରେ ପ୍ରବେଶ କଲେ । ଉତ୍ତମ କୌତୁକ ଦେଖିଯିବେ: କିନ୍ତୁ ଏ ସମସ୍ତ ଆମ୍ଭମାନଙ୍କର କୀର୍ତ୍ତି ।

ବିଶ୍ୱାମିତ୍ର—ଆମ୍ଭମାନଙ୍କର ଏ ସ୍ଥାନରେ ଅଧିକ କ୍ଷଣ ରହିବା ଭଲନୁହେଁ ।

(ଉଭୟଙ୍କର ପ୍ରସ୍ଥାନ, ପଟକ୍ଷେପଣ)



## ତୃତୀୟ ଦୃଶ୍ୟ

[ବେଶ୍ୟାର ନାଟ୍ୟଶାଳା]

[ପୁରୋହିତ ପୁତ୍ର ପୁଣ୍ୟଶ୍ଳୋକ, କଳାପି, ଚାରଣ ସହ ଆସନରେ ବସି ବିହ୍ୱଳ ପ୍ରାୟ]

—ବାଦ୍ୟ ସହ ବେଶ୍ୟାର ନୃତ୍ୟ—

କଳାପି—ଆରେ ବାହାବା, ସ୍ୟାବାସ୍, ସ୍ୟାବାସ୍ (ବିହ୍ୱଳ ହୋଇ)

ପୁଣ୍ୟଶ୍ଳୋକ—(ବିହ୍ୱଳ ହୋଇ) ସ୍ୟାବାସ୍, ବାଇଜୀ, ସ୍ୟାବାସ୍ ! ବହୁତ ଆଚ୍ଛା ! ବହୁତ ଆଚ୍ଛା !

ବାରଣ—ନାଚ ନ ହେଲେ ହେବନାହିଁ । ନାଚିବାକୁ ଉଦ୍ୟତ କଲୁ ପୁଣ୍ୟ ଶ୍ଳୋକଦ୍ୱାରା ଧୃତହେବା କାଳରେ ଭୂମିରେ ପତିତ]

ପୁଣ୍ୟଶ୍ଳୋକ—ଅନ୍ଧ ପାନେ ସୋମରସ ନ ପିଇଲେ ନାଚ ବାହାରିବ ନାହିଁ । ଏକ ସଙ୍ଗରେ ନାଚିବା । [ହସ୍ତ ପ୍ରସାରଣ କରିବାରୁ ବେଶ୍ୟାଦ୍ୱାରା ଦତ୍ତ ମଦ୍ୟ ପାତ୍ର ଗ୍ରହଣପୂର୍ବକ ପାନ କରି] ଅଚ୍ଛା ମାଲ୍ !

ବାରଣ—[ବିହ୍ୱଳ ହୋଇ] କଲୁ ଧରଲୋକ ମଞ୍ଚ ହୋଇ ରହିଗଲା । ସ ହେଲାନାହିଁ ।

ପୁଣ୍ୟ—ଅପ୍‌ସରା ! ଅପ୍‌ସରା ! ନାଚ୍ଚେ, ଗାଓ, ପିଲାଓ !

କଲାପି—ଆରେ ବହୁତ ଅଚ୍ଛା ବାତ୍‌ରେ ବହୁତ ଅଚ୍ଛା ବାତ୍ । ହାମ୍ ବ ତୋମାର ସାଂତ୍ ନାଚ୍ଚେ, ଗାଓ, ପିଲାଓ, [ମଦ୍ୟଗ୍ରହଣ ଓ ନାଚିବାକୁ ଉଦ୍ୟତ]

ବେଶ୍ୟା—ନାଚିବ, ଯଦି ଏହି ଉତ୍ତରୀୟ ଖଣ୍ଡିକ ଦେବ ।

ପୁଣ୍ୟ—[ଚକ୍ଷୁ ବୁଜି] ହାଁ, ହାଁ, ଦଓ, ଦଓ ।

କଲାପି—ପୁରୋହିତ ଭାଇ ! ସେ କଣ ରାଜପୋଷାକ ମାଗୁଛି ।
[ବେଶ୍ୟା ଅଖିଠାରି ଦେବାରୁ ଅପର ବେଶ୍ୟା ପୁଣ୍ୟଶ୍ଳୋକ ଦେହରୁ ଉତ୍ତରୀୟ ଗ୍ରହଣ କରି ପ୍ରତ୍ୟେକଙ୍କୁ ପୁଷ୍ପମାଳ ପ୍ରଦାନ]

ପୁଣ୍ୟଶ୍ଳୋକ—ଆରେ ! ନେଇଗଲ କି ? ଅଚ୍ଛା, ରାଜପୋଷାକ ନିଅ, ଆମର ଅଭାବ କ'ଣ ?

ବେଶ୍ୟାଦ୍ୱୟ—[ନୃତ୍ୟ ସହିତ ଗୀତ]

ଋତୁରାଜନ ସହି ଆଣିଛି ସଙ୍ଗେ ରାଇ
ମୀନ କେତନ ରାଜ ମଣିକ ଗୋ,
ନବ କୁସୁମ ସାଜେ ଲତା କି ରଙ୍ଗେ ନାଚେ
ରସାଳ ଅଙ୍ଗେ ଜଡ଼ି ହୋଇଛି ଗୋ ।

ଫୁଲ ଶର ବଳାହୀ ଛପି ରହିଛୁ ବସି
ଗୃନ୍ଦ କରଣେ ଆଜ ରଜନୀ ଗୋ,
ମୃଦୁ ମଧୁ ପବନ କାମ ବାଣ ଗୋପନ
କରି ରଖିଛୁ ଫୁଲ ପରାଗେ ଗୋ ।
ପିକ ଥାଇ ଗୁପତେ କହଇ କି ସଙ୍ଗୀତେ
ମଦନ ରାଜଦୂତ ମାନିନୀ ଗୋ ।

[କଳାପି, ବାରଣ, ପୁଣ୍ୟଶ୍ଲୋକ ତାଳ ଅନୁସାରେ ମଧ୍ୟେ ମଧ୍ୟେ ବାହ୍ୱାବା ସ୍ୟାବାସ୍ ଇତ୍ୟାଦି ଉଚ୍ଚାରଣ]

ପୁଣ୍ୟ—ବେଶ୍ ଗୀତ ! ଅଯୋଧ୍ୟା ନଗର ଅଳଙ୍କାନ ମଧ୍ୟରେ ସ୍ୱର୍ଗପୁରୀ ହେବ ।

କଳାପି—ସେଥିଲାଗି ମେନକା ଆଗରୁ ଓହ୍ଲାଇ ଆସିଛି ।

ବାରଣ—ଲେକନ୍ ଉନ୍ଦେମାଲ୍ ! ବାଇଜୀ ଆଉର ଦୋସ୍‌ରା ଗାନ୍ କରସ୍ତେ ।

[ନୃତ୍ୟ ସହିତ ଗୀତ]

କୁସୁମ ଚନ୍ଦନେ କନକ ଭୂଷଣେ ଅଛୁକି ଗରଳ
ସଜନୀ ଗୋ ।
ଜାଣିଥିଲେ ସଖି, ପରିହାର ସାଜ ରହିଥାନ୍ତି ଆଜ
ରଜନୀ ଗୋ ।
ହିମକର କରେ ଏ ମୃଦୁ ସମୀରେ କୁସୁମ ଦୋଳାରେ
ଛୁଆରେ ଗୋ ।
ତାପ ଥାଏ ଜାଣି ନବ ବରହଣୀ ଆସିଥାନ୍ତି କି ମୁଁ
ଯାମିନୀ ଗୋ ।
ମଧୁକର ଆସି କୁସୁମ ପରଶି କି ଭାବ ଗୋପନେ
କହଇ ଗୋ ।
ପଚ୍ଚରିବୁ ସଖି ପୀରତି କୁମୁଦ ଶୁଖାଏ କି ମଧୁ
ଗୃନ୍ଦନୀ ଗୋ ।

[ପୁଣ୍ୟଶ୍ଳୋକ ପ୍ରଭୃତ ଉନ୍ମାଦପୂର୍ବକ ବେଶ୍ୟା ବ୍ୟକ୍ତି ଘେରି ଗୀତ]

ବାହ୍ୱାବା ବାହ୍ୱାବା ବାହ୍ୱାରେ
ଅପଛଗ୍ଧି କ ଅବା ଗୁହ୍ୱରେ ।

[ଏକ ବଗରେ ଛଦ୍ମବେଶଧାରୀ ରାଜା, ସେନାପତ ଓ ସୈନକଦ୍ୱୟ ପ୍ରବେଶ ]

ସେନାପତ—ବାହ୍ୱାବା, ବାହ୍ୱାବା ପୁରୋହିତେ ! ଆଜ ସନ୍ଧ୍ୟା ସମୟରେ ଏଠାକୁ ଆସି ସନ୍ଧ୍ୟା କରୁଥିଲେ କ ? ପୂଜାପାତ୍ରଗୁଡ଼ିକ ତ ସମ୍ମୁଖରେ ରହିଛ ।

[ସମସ୍ତେ ପଳାୟନ କରିବାକୁ ଉଦ୍ୟତ; କନ୍ତୁ କଳାପୀ ଓ ବାରଣ ଦୁଇଗୋଟି ମୁଷ୍ଟ୍ୟାଘାତ ପାଇବାରୁ ସମସ୍ତେ ସୈନକମାନଙ୍କଦ୍ୱାରା ଅବରୁଦ୍ଧ । ]

ସେନାପତ—ଆପଣଙ୍କ ଲଜ୍ଜା ନାହିଁ । ଆପଣ ନଜର ଦୋଷ ନ ଦେଇ ଇତର ବ୍ୟକ୍ତିମାନଙ୍କର ଦୋଷ ଦେଇଅଛନ୍ତି । ଯେଉଁ ପୁରୋହିତ ରାଜସଭାରେ ପ୍ରବେଶ କଲେ ମହାରାଜ ନତମସ୍ତକ ହୋଇ ଆସନ ପ୍ରଦାନ କରନ୍ତି, ସେହି ପୁରୋହିତ ବେଦବଦ୍ୟା ବଶାରଦ ଦେବ ସେବାନୁରକ୍ତ ନ ହୋଇ ଆଜ ବେଶ୍ୟାଳୟରେ ଇତର ବ୍ୟକ୍ତି-ମାନଙ୍କ ସହିତ ମଦ୍ୟପାନ କର ନୃତ୍ୟ କରୁଅଛନ୍ତି । ହା ଦୈବ ! ରାଜା ସ୍ୱୟଂ ଏ ଦୃଶ୍ୟ ଦେଖିଲେ ।

ରାଜା—ସେନାପତ ! ଶାସ୍ତ୍ରରେ ଶୁଣାଯାଏ ଯେ କଳଯୁଗ ଉପସ୍ଥିତ ହେଲେ, ରକ୍ଷକମାନେ ଭକ୍ଷକ ହେବେ, ଯାଗ ଯଜ୍ଞ ବଲୁପ୍ତ ହେବ ଏବଂ ବ୍ରାହ୍ମଣମାନେ ଶାସ୍ତ୍ର ଚର୍ଚ୍ଚା ପରହାରପୂର୍ବକ ମଦ୍ୟପାୟୀ, କଦାଚାରୀ ଓ ଅଜ୍ଞ ହେବେ; କନ୍ତୁ ଏହି ଦୃଶ୍ୟ ଦେଖି ମୋର ପାଦ ସ୍ତମ୍ଭିତ ହୋଇଯାଉଅଛୁ । ମୋ ରାଜ୍ୟରେ ପୁଣି ପୂଜାର୍ହ ଏହି ପୁରୋହିତଙ୍କ

ଏହିପରି ବ୍ୟବହାର କରୁଥିବାର ଦେଖି ମୁଁ କାହାକୁ ନିନ୍ଦା କରିବ ? ନିଜକୁ ନା ମାନ୍ୟାସ୍ପଦ ଦୂଷିତଚରିତ୍ର ଏହି ବ୍ୟକ୍ତିଙ୍କୁ ?

ସେନାପତି—ରାଜା ମାନ୍ୟାସ୍ପଦ ବ୍ୟକ୍ତିଙ୍କ ପ୍ରତି ଦଣ୍ଡାଜ୍ଞା ସ୍ୱୟଂ ଉଚ୍ଚାରଣ କରନ୍ତିନାହିଁ । ଆପଣ ଆଜିଠାରୁ ପୁଣି ପୌରାଦିକ୍ରମେ ରାଜ-ପ୍ରାସାଦକୁ ଯାଇପାରିବେ ନାହିଁ ଏବଂ ବୃତ୍ତି……

ରାଜା—ନା ! ବୃତ୍ତି ଛେଦନ କରିବନାହିଁ । ଯାହା ବ୍ରାହ୍ମଣଙ୍କୁ ଦାନ ଦିଆ-ହୋଇଅଛି, ତାହା ତାହାଙ୍କର ସ୍ୱତ୍ୱ ।

ସେନାପତି—ଏହି ଦସ୍ତା ସ୍ମରଣ କରି ଚରିତ୍ର ସଂସ୍କାର କରନ୍ତୁ, କିମ୍ବା ଏହି ପରି ଆଚରଣଦ୍ୱାରା ରାଜାଙ୍କୁ ପୁନଃପୁନଃ ଅପମାନିତ କରନ୍ତୁ ! (ରାଜାଙ୍କ ସହିତ ପ୍ରସ୍ଥିତ ପ୍ରାପ୍ତ)

(ସୈନିକଦ୍ୱୟ କଳାପି ଏବଂ ଚାରଣରୁ ମୁଷ୍ଟ୍ୟାଘାତ ଓ ବେଶ୍ୟା-ଦ୍ୱୟଙ୍କୁ ଧରିବାକୁ ଯିବା କାଳରେ)

ରାଜା—ନା, ତାହାର ବ୍ୟବସାୟ ସେ କରୁ । ଏହି ବେଶ୍ୟାଦ୍ୱୟଙ୍କୁ ମୁଁ କ୍ଷମା କଲି । ନଗର ରକ୍ଷକମାନେ ଯଦି ଦେଖିବେ ଯେ ବ୍ରାହ୍ମଣ, କ୍ଷତ୍ରିୟ ପ୍ରଭୃତି ମାନ୍ୟାସ୍ପଦ ବ୍ୟକ୍ତିମାନେ ବେଶ୍ୟାଳୟରେ ଆମୋଦ ପ୍ରମୋଦ କରୁଅଛନ୍ତି, ତା ହେଲେ ସେମାନେ ଓ ପାପର ପ୍ରଶ୍ରୟଦାୟିନୀ ବେଶ୍ୟାମାନେ ରାଜ୍ୟରୁ ନିର୍ବାସିତା ହେବେ । ସେନାପତି ! ଏହି ସ୍ଥାନରୁ ଶୀଘ୍ର ପ୍ରତି ନିବୃତ୍ତ ହେବା ।

[ଏକ ଦିଗରେ ରାଜା ପ୍ରଭୃତିଙ୍କର ପ୍ରସ୍ଥାନ । ଅନ୍ୟ ଦିଗରେ ବେଶ୍ୟା ଦ୍ୱୟ ପୁଣ୍ୟଶ୍ଳୋକ ପ୍ରଭୃତିଙ୍କର ପ୍ରସ୍ଥାନ)

—ପଟକ୍ଷେପଣ—



## ଚତୁର୍ଥ ଦୃଶ୍ୟ

—ପଥ—

[ସେନାପତି, ରାଜା, ସୈନିକଦ୍ୱୟଙ୍କ ପ୍ରବେଶ]

ସେନାପତି—ରାଜ୍ୟ ବିସ୍ତାର ଲାଲସା, ବିଜୟ କାମନା,
ସୁଖ ପଦକ୍ଷେପେ, ପ୍ରଜା ପରିକ୍ଷଣ ଚିନ୍ତା ।
ଦାୟିତ୍ୱ ଶାସନ, ରାଜ୍ୟ, ଦୂରିତ ସନ୍ତାପ,
ଦ୍ୱିଗୁଣ ଦୁଃଖଦ ଧର୍ମ ଜାଗରୂକ ପ୍ରାଣେ ।
ସ୍ୱର୍ଣ୍ଣ ପ୍ରାସ୍ତେ ରାଜା ଚିନ୍ତାଗ୍ନି ପରିଶୋଧିତ,
ସ୍ୱୟଂ କ୍ଲିଷ୍ଟଧର୍ମ ଶୁଦ୍ଧ ଅନ୍ୟର ଭୂଷଣ,
ସୁଖଚନ୍ଦ୍ର, ପ୍ରଜାପୁଞ୍ଜ, କିନ୍ତୁ ନରପତି ।
ପ୍ରତ୍ୟକ୍ଷ ପରାସ୍ତେ ଧର୍ମ ପଥେ ଅଧିରୂଢ଼
କୋଟି କୋଟି ନରନାରୀ ଏକ ପରିବାରେ
କରଣ ପ୍ରତିପାଳିତ ଏକାକ୍ଷ ନୃପତି,
ରତ୍ନ ବିଜଡ଼ିତ ସ୍ୱର୍ଣ୍ଣ ମୁକୁଟ ଛଳରେ
ପ୍ରଜା ଦୁଃଖ ଦୈବଦଣ୍ଡ ବହଇ ମସ୍ତକେ ।

ରାଜା—ସେନାପତି ! ତ୍ରିଭୁବନ ହର୍ତ୍ତା ସୃଷ୍ଟିକର୍ତ୍ତା
କରୁଣା ସାଗର ଈଶ ନ ହେଲେ ସହାୟ
କେ ହେବ ସମର୍ଥ ରାଜ୍ୟ ଦାୟିତ୍ୱ ପାଳନେ ?
ବିଶ୍ୱକର୍ତ୍ତା, ବିଶ୍ୱପାତା, ବିଷ୍ଣୁ, ବିଶ୍ୱମ୍ଭର
ସଂସାର ପାଳନ ସତ୍ୟ ପରିକ୍ଷଣେ ସଦା
ଜାଗ୍ରତ ଅଛନ୍ତି ବଧି, କପଟ ତାଡନା।
ଜୀବ ମୁକ୍ତ ଶାନ୍ତ, ନାରାୟଣ ସଦଟିତ

ଅର୍କ ପ୍ରାପ୍ତେ ରାତ ଶଶ ସ୍ୱୟଂ ପ୍ରଜ୍ୱଳିତ
ଅନ୍ୟେ ସୁଖପ୍ରଦ ପ୍ରଦର୍ଶନ ରଶ୍ମି ସମ ।

[ ଦୁଇଜଣ ବୃଦ୍ଧଙ୍କର ପ୍ରବେଶ ଏବଂ ଛଦ୍ମବେଶଧାରୀ ବ୍ୟକ୍ତିଗଣ ଲୁକ୍କାୟିତ ]

ପ୍ରଥମ ବୃଦ୍ଧ—ସଂସାରରେ କଳିଯୁଗ ଘୋଟି ଆସିଲା । ଆଉ ଏ ରାଜ୍ୟରେ ରହିବା କଠିନ ।

ଦ୍ୱିତୀୟ ବୃଦ୍ଧ—ହୋଇ ହୋ ! ଦିନ ଦୁଇ ପ୍ରହରଟାରେ ଗୋଟାଏ ଗୃହିଣୀ ସ୍ତ୍ରୀଟାକୁ ଟଣା ଓଟରା କରୁଛନ୍ତି । ଏକଥା କିଏ ସହିବ ? ଏ ଭଳି ରାଜ୍ୟରେ ଏପ୍ରା ଘଟିଲା ?

ପ୍ରଥମ ବୃଦ୍ଧ—ରାଜା ଠିକ୍ ହେଲେ ପ୍ରଜାଙ୍କର ସୁଖ । ରାଜାଙ୍କର ତ ଆଜି ପର୍ଯ୍ୟନ୍ତ ନିଦ ଭାଙ୍ଗିନାହିଁ ! ବୁଝିବ କିଏ ?

ଦ୍ୱିତୀୟ ବୃଦ୍ଧ—ନଗର ରକ୍ଷକଗୁଡ଼ାକ ଚୋରଙ୍କ ସାଙ୍ଗରେ ଚୋର ହେଲେଣି ।

ପ୍ରଥମ ବୃଦ୍ଧ—ହେବେନାହିଁ କାହିଁକି ? ରାଜାଙ୍କୁ କିଏ କହିବ ? କିଏ ଜଣେଇବ ? ସମସ୍ତେ ଜଣେ ଜଣେ ରାଜା ହେଲେଣି ।

ଦ୍ୱିତୀୟ ବୃଦ୍ଧ—ତେବେ ଚାଲ, ଆଉ ଏ ରାଜା ଏଠାରେ ରହିବେନାହିଁ । ରାଜ୍ୟ ଅରାଜକ ହେଲା ।

ପ୍ରଥମ ବୃଦ୍ଧ—ବୁଝିଲ, ହରିଶ୍ଚନ୍ଦ୍ର ରାଜା କଣ ଟିକିଏ କି ? କେବଳ ଏହି ଅଳସ ପଣରୁ ସରୁଜିବ । (ଉଭୟଙ୍କର ପ୍ରସ୍ଥାନ)

ସେନାପତି—ମହାରାଜ !

ଅରାତି ଜିଘାଂସ; ବୃତ୍ତି ବଜ୍ର ଗଦ ସମ
ସଂଗ୍ରାମ ସାହସ ପ୍ରାପ୍ତେ, ପରେ ତ ତାଡ଼ନ

ଦସ୍ୟୁ ଗଣ ନିବାରଣ ହୋଇଯାଏ ପରାସ୍ତେ
ଉଲ୍ଲୁକ ତାମସ ଚୌର ସୂର୍ଯ୍ୟ ରଶ୍ମିପ୍ରାୟେ
ଦୁର୍ଜ୍ଜନ ଦମନ ଅର୍ଥେ ଦଣ୍ଡନୀତି ନ୍ୟସ୍ତ
ଦଣ୍ଡଧର ହସ୍ତେ ! ପ୍ରଭୋ କଠୋର ଶାସନ।
ଅଳ୍ପକାଳେ ଶାନ୍ତି ସୁଖ ଆଣିବ ଯତନେ
ମୃତ୍ୟୁଦଣ୍ଡ ଗୁରୁପାପେ, ଲଘୁ ଅପରାଧେ
ସପ୍ତାହ ମଧ୍ୟରେ କାଶଦେବ ପ୍ରଜାପୁଞ୍ଜେ ।

ରାଜା—ସତ୍ୟ ସେନାପତି ! କଠୋର ତାଡ଼ନେ
ଦୁର୍ନୀତି କଣ୍ଟକ ମୂଳି ନିକ୍ଷେପିବ ଦୂରେ
ଆଣିବ ପୁନଶ୍ଚ ଶାନ୍ତି ବିରାଜିବ ଯାହା
ସୁଗନ୍ଧ କୁସୁମ ସମ ବିମଳ ଉଦ୍ୟାନେ
ଅଯୋଧ୍ୟା ନୃପତି କୁଳ ଚିର ସୁଖ ଶାନ୍ତି
ବହୁକାଳ ନ ରହିବ ଅଧର୍ମ ବନ୍ଧନେ
କିନ୍ତୁ ସେନାପତି ! ସୁବିମଳ ବ୍ୟୋମଦେଶେ
ବିଦ୍ୟୁତ ପ୍ରବାହ ପରି ରାଜ୍ୟେ ଏ ଉତ୍ପାତ ।

[ନେପଥ୍ୟେ 'ଧାଇଁ ପଡ଼ ହୋ, ମାରି ପକେଇଲେ ହୋ, ଚୋର, ଚୋର, ଧର ଧର, ଇତ୍ୟାଦି ଚିତ୍କାର ଶବ୍ଦ । ଦୁଇ ଜଣଙ୍କର ରକ୍ତାକ୍ତ ଦେହରେ ପ୍ରବେଶ]

ପ୍ରଥମ ବ୍ୟକ୍ତି—ଆଉ ଏ ରାଜ୍ୟରେ ରହିବା ନାହିଁ । ଚାଲ ଯିବା । ରାଜାଙ୍କ ଉଆସରେ କହିଦେଇ ନଅର ଛାଡ଼ି ପଳାଇବା ।

ଦ୍ୱିତୀୟ ବ୍ୟକ୍ତି—ଖାଉଁ ଖାଉଁ ଚୋର ପଶୁଛନ୍ତି । କାହା ଆଗରେ କହିବା, କିଏ ଶୁଣିବ ?

ଚୋରମାନେ ଗୃହସାମଗ୍ରୀ ବାକ୍ସ ନେଇ ପ୍ରବେଶ]

ଉଭୟେ—ଚୋର, ଚୋର, ଧର, ଧର ।

[ରାଜା, ସେନାପତି, ସୈନିକଦ୍ୱୟଙ୍କ ପ୍ରକାଶ୍ୟେ ଚୋର ଦମନପୂର୍ବକ ହାତକଡ଼ି ଲଗାଇ ଚୋରମାନଙ୍କ ସହିତ ପ୍ରତିନିବୃତ୍ତି]

[ପଟକ୍ଷେପଣ]



# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

### [ରାଜସଭା]

(ରାଜା, ସେନାପତି, ମନ୍ତ୍ରିଗଣ ଆସୀନ । ସଖୀଜନ ସହିତ ରାଣୀଙ୍କର ପ୍ରବେଶ, ସଖୀମାନଙ୍କର ପ୍ରବେଶ ଓ ନୃତ୍ୟ)

ପାପତାପ ନାଶନ ହରି କାତର ହୃଦ ବାସ ହେ ।
ଦାନବଦଳ ବାମଦ ଶିବ ସହର ଭବ ପାଶ ହେ । ୧ ।
ପୀତବାସ କାଣହାସ ଦୀନବନ୍ଧୁ ସିନ୍ଧୁ ବାସ ।
ନାଗର ବର ସୁନ୍ଦର ଭବ ତାପ ନିକର ନାଶ ହେ । ୨ ।
ସତ୍ୟସାର ବାସୁଦେବ ସୁରାସୁର ବନ୍ଦ୍ୟ ପାଦ ।
କେଶବ ମଧୁ ନାଶକ ହରି ତାମସ ଶତ୍ରୁ ହାସ ହେ । ୩ ।

ରାଜା—ଦେବ ! ସ୍ୱଚକ୍ଷୁରେ ଦେଖି ଆସିଲି, ନଗରର ଚତୁର୍ଦ୍ଦିଗରେ ଅଶାନ୍ତି । ତୁମ୍ଭର ସତ୍ ପରାମର୍ଶ ଏବଂ ବୁଦ୍ଧି ବଳର ଆମ୍ଭମାନଙ୍କର ପ୍ରୟୋଜନ ଥିଲା । ଅର୍ଦ୍ଧାଙ୍ଗିନୀ ମହାରାଣୀଙ୍କର ସାହାଯ୍ୟ ଲାଭ କରିବାକୁ ମନ୍ତ୍ରୀମାନେ ପରାଙ୍ମୁଖ ହୁଅନ୍ତିନାହିଁ ।

ପ୍ରଥମ ମନ୍ତ୍ରୀ—କେତେ କେତେ ଗୁରୁତର ବିଷୟରେ, ରାଜନୀତି ବିଶାରଦ ! ବିଦୂଷୀ ମହାରାଣୀଙ୍କର ସତ୍ ପରାମର୍ଶ ଏବଂ ସାହାଯ୍ୟ ପରିଗୃହୀତ ହୋଇଅଛି । ସୁତରାଂ ଉପସ୍ଥିତ ପ୍ରସ୍ତାବକୁ ମହାରାଣୀ ଅନୁମୋଦନ କରିବେ ।

ରାଜା—ଦେବ ! ଯେଉଁ ନୀତି ଶାନ୍ତି ସମୟରେ ପ୍ରଜାମାନଙ୍କର ହିତକାରକ, ସେହି ନୀତି ରାଷ୍ଟ୍ରବିପ୍ଳବ ସମୟରେ କିମ୍ବା ବିଦ୍ରୋହ ସମୟରେ ସମ୍ପୂର୍ଣ୍ଣ ଉପଯୋଗୀ ନୁହେଁ । ଏହି କାରଣରୁ ମନ୍ତ୍ରିଗଣ ଓ

ସେନାପତି ସମସ୍ତେ କଠୋର ଦଣ୍ଡନୀତି ଅବଲମ୍ବନ କରିବାକୁ ପରାମର୍ଶ ଦେଉଅଛନ୍ତି ।

ରାଣୀ—ମହାରାଜ ! ପ୍ରଥମେ ରୋଗର କାରଣ ନିର୍ଦ୍ଦେଶ କରି ବିକିତ୍ସା କରା-ହୁଏ । ଯେଉଁ ପ୍ରଜାମାନେ ଅଳ୍ପଦିନ ପୂର୍ବେ ଶାନ୍ତ, ଧର୍ମଶୀଳ ଓ କର୍ତ୍ତବ୍ୟନିଷ୍ଠ ଥିଲେ, ସେମାନେ ସହସା ଅବନୀତ ହେବାର କାରଣ ଅଦ୍ୟାବଧି କେହି ନିଶ୍ଚୟ କରିପାରୁନାହାନ୍ତି । ମୂଳ କାରଣ ନ ବୁଝିବା ପର୍ଯ୍ୟନ୍ତ ଧୈର୍ଯ୍ୟ ଧାରଣ କରି ଅପେକ୍ଷା କରିବା ବାଞ୍ଛନୀୟ । କଠୋର ଦଣ୍ଡନୀତିଦ୍ୱାରା ସତ୍ୱର ସୁଫଳ ହୋଇପାରେ; କିନ୍ତୁ ପରିଣାମରେ ଫଳ ବିଷମୟ ହେବ । ଯଦି ଦେଖାଯାଏ, କୌଣସି କାରଣରୁ ପ୍ରଜାମାନେ ଅନ୍ୟବ୍ୟକ୍ତିର ପ୍ରରୋଚନାରେ ଦୁଷ୍ଟ ଏବଂ ଉଦ୍ଧତ ହୋଇଅଛନ୍ତି ।

ପ୍ରଥମ ମନ୍ତ୍ରୀ—ମହାରାଣୀ ! ଆମ୍ଭେମାନେ ବର୍ତ୍ତମାନ ଦୋଷର ଦଣ୍ଡ ଦେଉ ଏବଂ ଭବିଷ୍ୟତକୁ ଯଦି ଜଣାଯିବ ଯେ ଶତ୍ରୁ ପ୍ରଭୃତିଙ୍କର ପ୍ରରୋଚନାରେ ପ୍ରଣୋଦିତ ହୋଇ ପ୍ରଜାମାନେ ଧର୍ମଭ୍ରଷ୍ଟ ହୋଇ-ଥିଲେ, ତା ହେଲେ ନୀତିର ପରିବର୍ତ୍ତନ ଏବଂ ଅନିଷ୍ଟର କାରଣ ବିନାଶ ନିକାଶେ ଆମ୍ଭେମାନେ ଉଦ୍ୟତ ହେବୁ ।

ରାଣୀ—ମୋର ମତରେ କିଛୁକାଳ ନିକାଶେ କଠୋର ଦଣ୍ଡନୀତି ଅବଲମ୍ବନ କରାଯାଉ; କିନ୍ତୁ ତଦ୍ଦ୍ୱାରା ଉପକାରର ଆଶା ଅତି ଅଳ୍ପ ।

ସେନାପତି—ଉପକାର ନ ହୋଇପାରେ; କିନ୍ତୁ ଆମ୍ଭମାନଙ୍କର ନିଶ୍ଚେଷ୍ଟତା ଓ ଜଡ଼ତା ବିଶେଷ ଅନିଷ୍ଟକାରକ ହେବ ।

ରାଣୀ—ମହାରାଜ ! ମୋ ମତରେ ପରୀକ୍ଷାସ୍ୱରୂପ କିଛୁକାଳ ନିକାଶେ କଠୋର ଦଣ୍ଡନୀତି ଅବଲମ୍ବନ କରାଯାଉ ; କିନ୍ତୁ ବିଶ୍ୱରାସନରେ ଗୌରବ ନଷ୍ଟ ହୋଇଥିବାରୁ ସର୍ବାଦୌ ବିଶ୍ୱରିପତିମାନଙ୍କର ପରିବର୍ତ୍ତନ ଆବଶ୍ୟକ ।

ରାଜା —ମହାରାଣୀଙ୍କର ପରାମର୍ଶ ଗ୍ରହଣୀୟ, ସନ୍ଦେହ ନାହିଁ ।
[ବନ୍ଦି ଚୋରମାନଙ୍କୁ ଘେନି ଦୁଇଜଣ ପ୍ରହରୀଙ୍କର ପ୍ରବେଶ ଏବଂ ସେନାପତିଙ୍କୁ ପତ୍ର ପ୍ରଦାନ]

ସେନାପତି—(ପତ୍ର ପାଠକରି) ମହାରାଜ ନଗରର ପ୍ରଧାନ ବିଚାରପତି ପତ୍ର ଲେଖିଅଛନ୍ତି ଯେ, ଦସ୍ୟୁମାନେ ସ୍ୱୟଂ ଦୋଷ ସ୍ୱୀକାର କରୁଅଛନ୍ତି ଏବଂ ଗୃହସ୍ୱାମୀ ନିଜର ପଦାର୍ଥମାନ ଚିହ୍ନିଥିବା ଏବଂ ଦସ୍ୟୁମାନେ ଗୃହସ୍ଥ ବ୍ୟକ୍ତିମାନଙ୍କୁ ଗୁରୁତର ଆଘାତ କରିଥିବା ଅବସ୍ଥାରେ ସ୍ୱୟଂ ସେନାପତିଙ୍କଦ୍ୱାରା ଧୃତ ହୋଇଥିବାରୁ, ସମ୍ପୂର୍ଣ୍ଣ ଦୋଷୀ ପ୍ରମାଣିତ ହୋଇଅଛନ୍ତି; କିନ୍ତୁ ଉପସ୍ଥିତ କ୍ଷେତ୍ରରେ ନୂତନ ଦଣ୍ଡନୀତି ବିଚାରାଳୟରେ ଅଙ୍କିତ ଥିବାରୁ ବିଚାରପତି ମହାରାଜଙ୍କ ଦଣ୍ଡାଦେଶ ପ୍ରତୀକ୍ଷା କରି ଦସ୍ୟୁମାନଙ୍କୁ ଶ୍ରୀ ଗୁରୁମୁଖକୁ ପ୍ରେରଣ କରିଅଛନ୍ତି ।

ରାଜା —ଦୋଷୀମାନଙ୍କର କିଛି ବକ୍ତବ୍ୟ ଥିଲେ ସେମାନେ ସଭାରେ ନିବେଦନ କରିପାରନ୍ତି ।

ସେନାପତି—ତୁମ୍ଭେମାନେ ବିଚାରପତିଙ୍କ ସମକ୍ଷରେ ଯେଉଁ ଦୋଷ ସ୍ୱୀକାର କରିଅଛ, ତତ୍ ସମ୍ବନ୍ଧରେ ସଭାରେ କିଛି କହିବ ?

ଦସ୍ୟୁଗଣ—ଦୋହି ମହାରାଜ ! ରକ୍ଷାକର ! ଆମ୍ଭେମାନେ କୁବୁଦ୍ଧିରେ ଦୋଷ କରିଅଛୁ । ଆମ୍ଭମାନଙ୍କୁ କ୍ଷମା କରାଯାଉ ।

ସେନାପତି—ଏହି ବିଷୟରେ ଶ୍ରୀ ଗୁରୁଙ୍କର ମତ·········

ରାଜା—ମୋର ମତ ଏମାନଙ୍କର ଶିରଚ୍ଛେଦନ କରାଯାଉ ।

ପ୍ରଥମ ମନ୍ତ୍ରୀ—ଶୂଳର ଆଦେଶ ଅପେକ୍ଷା ଏହି ସ୍ଥଳରେ ଶିରଚ୍ଛେଦନ ଶ୍ରେୟସ୍କର ।

ରାଜା—ଆମ୍ଭର ମଧ୍ୟ ସେହି ମତ ।

ଦ୍ୱିତୀୟ ମନ୍ତ୍ରୀ—ମୃତ୍ୟୁଦଣ୍ଡ ଅତ୍ୟାବଶ୍ୟକ ।

ରାଜା—ତାହାହେଲେ ଦସ୍ୟୁମାନଙ୍କର ଶିରଚ୍ଛେଦନ ହେବ ।

ସେନାପତି—[ରାଜାଙ୍କ ପତ୍ରରେ ଲେଖି ସୈନିକ ହସ୍ତରେ ପ୍ରଦାନ]

ଦସ୍ୟୁଗଣ—[ଚିତ୍କାର କରି] ପ୍ରଣିପାତ, ହେ ମହାରାଜ ! ରକ୍ଷାକର ! ରକ୍ଷାକର ! ପ୍ରାଣ ରକ୍ଷାକର ।

ସୈନିକଦ୍ୱୟ—[ଦସ୍ୟୁମାନଙ୍କୁ ବଳପୂର୍ବକ ଆକର୍ଷଣ]

[ବିଶ୍ୱାମିତ୍ର ହସ୍ତ ଉତ୍ତୋଳନପୂର୍ବକ ଉଚ୍ଚୈଃ ସ୍ୱରେ "ଶାନ୍ତଃ, ଶାନ୍ତଃ, ଶାନ୍ତଃ" କହି ମାଙ୍ଗଳ୍ୟ ସଭା ପ୍ରବେଶ]

ବିଶ୍ୱାମିତ୍ର—ବିଜୟୋସ୍ତୁ ମହାରାଜ !

[ସଭାସ୍ଥ ବ୍ୟକ୍ତିଗଣ ଆସନ ପରିତ୍ୟାଗପୂର୍ବକ ବିଶ୍ୱାମିତ୍ରଙ୍କ ପାଦ ବନ୍ଦନ]

ସଭା ମନ୍ଦିରରେ ସମ୍ପ୍ରତିଃ ଏହି ଦୋଷୀମାନଙ୍କର ଚିତ୍କାର ଶୁଣି ମନରେ ଅଶାନ୍ତିର ଆଶଙ୍କା ହେବାରୁ ମୁଁ 'ଶାନ୍ତ' 'ଶାନ୍ତ' ବୋଲି ଉଚ୍ଚସ୍ୱରେ କହିଅଛି । ଅପରାଧ ମାର୍ଜନା କରିବେ । ଆପଣ ସପରିବାରେ କୁଶଳରେ ଅଛନ୍ତି ତ ? ସମୃଦ୍ଧିଶାଳୀ ଏହି ବିଶାଳ ରାଜ୍ୟରେ ପ୍ରଜାମାନଙ୍କର କୌଣସି ଅମଙ୍ଗଳ ହେଉନାହିଁ ତ ?

ରାଜା—ଆପଣଙ୍କର ଶୁଭାଶୀର୍ବାଦରେ ଯେଉଁ ଦାସ ପରିବର୍ଦ୍ଧିତ, ତାହାର କୁଶଳ ଜିଜ୍ଞାସା ଅନାବଶ୍ୟକ । ଭବଦୀୟ ଶୁଭାଗମନରେ ମୁଁ ଆପଣାକୁ ଧନ୍ୟ ମନେକରୁଅଛି । କାରଣ ଯେଉଁ ଉପସ୍ଥିତ ବିପଦରେ ଅମ୍ଭେମାନେ ବିଜଡ଼ିତ ହୋଇଅଛୁଁ, ସେହି ବିପଦରେ ଆପଣଙ୍କ ସହାୟ ଏବଂ ଶୁଭାଶୀର୍ବାଦ ବ୍ୟତୀତ ଅନ୍ୟ ପ୍ରତିକାର ନାହିଁ । ଏହି ଦସ୍ୟୁମାନେ ଗୁରୁତର ଅପରାଧରେ ଦୋଷୀ ହୋଇଥିବାରୁ ସେମାନଙ୍କୁ ପ୍ରାଣଦଣ୍ଡର ଆଦେଶ ହୋଇଅଛି ।

ବିଶ୍ୱାମିତ୍ର—କି ଅପରାଧରେ ସେମାନେ ଦୋଷୀ ଅଟନ୍ତି ?

ରାଜା—ତସ୍କରତା ।

ବିଶ୍ୱାମିତ୍ର– ଚୋରମାନଙ୍କୁ ପ୍ରାଣଦଣ୍ଡ ! ମହାରାଜ ! ଆଦେଶ କିଞ୍ଚିତ୍ କଠୋର ହୋଇନାହିଁ କି ? ମୋର ଇଚ୍ଛା, ଏ ମାନଙ୍କୁ କ୍ଷମା କରନ୍ତୁ ।

ରାଜା—କିନ୍ତୁ ଯଦି ଆପଣଙ୍କ ରାଜ୍ୟରେ ଆଶୀର୍ବାଦରେ ପୁନଶ୍ଚ ଶାନ୍ତି ବିରାଜିତ ହେବ, ତାହାହେଲେ ଦଣ୍ଡାଦେଶ ପ୍ରତ୍ୟାହାର କରି କ୍ଷମା କରିବି ।

ବିଶ୍ୱାମିତ୍ର—କେବଳ ରାଜ୍ୟରେ ଶାନ୍ତି ପ୍ରୟୋଜନ ?

ରାଜା—ଆଜ୍ଞା !

ବିଶ୍ୱାମିତ୍ର—ତାହାହେଲେ ଆଜଠାରୁ ମୋର ଆଦେଶରେ ଅଶାନ୍ତି ବିଦୂରିତ ହୋଇ ଶାନ୍ତି ସ୍ଥାପିତ ହେବ ।

ରାଜା—ଏହି କାରଣରୁ କହୁଥିଲି ଯେ ଆପଣଙ୍କ ଶୁଭାଗମନରେ ଆମ୍ଭମାନଙ୍କର ପରିଶ୍ରମ ଚିନ୍ତା ବିଦୂରିତ ହୋଇଛି । [ସୈନିକ ମାନଙ୍କ ପ୍ରତି] ଦସ୍ୟୁମାନଙ୍କୁ କ୍ଷମାକର । ସେମାନଙ୍କୁ ଆମ୍ଭେ କ୍ଷମାକଲୁ । ମହାଭାଗ ! ଆସନରେ ଉପବେସନ କରନ୍ତୁ ।

[ସିଂହାସନରେ ବିଶ୍ୱାମିତ୍ରଙ୍କର ଉପବେଶନ । ରାଣୀ ପାଦାର୍ଘ୍ୟ ନେଇ ପୁନଃ ପ୍ରବେଶ ।] [ରାଣୀଙ୍କର ବିଶ୍ୱାମିତ୍ରଙ୍କୁ ପାଦାର୍ଘ୍ୟ ଦାନ ।]

ବିଶ୍ୱାମିତ୍ର—ମହାରାଜ ହରିଶ୍ଚନ୍ଦ୍ରଙ୍କର ସମୁଜ୍ଜ୍ୱଳ କୀର୍ତ୍ତି ସ୍ୱର୍ଗଲୋକ ଭେଦ କରିଅଛି । ମର୍ତ୍ତ୍ୟଲୋକରେ ହରିଶ୍ଚନ୍ଦ୍ର ମହାରାଜ ଯେପରି ଦାନଶୀଳ, ସେହିପରି ସତ୍ୟବାଦୀ । ପରମ ସତୀ ସାଧ୍ୱୀ ମହାରାଣୀ ଶୈବ୍ୟା ରାଜକାର୍ଯ୍ୟରେ ମହାରାଜଙ୍କର ପ୍ରଧାନ ସହାୟ । ବୋଧ ହେଉଅଛି, ଯେପରି କି ଇନ୍ଦ୍ରଶଚୀ ମର୍ତ୍ତ୍ୟଲୋକରେ ବାସ

କରୁଅଛନ୍ତି । ମହାରାଜ ! ମୋର ତପସ୍ୟା ଶ୍ରମରେ ଉବାଦ ବିଦ୍ୟାମାନଙ୍କର ଉଦ୍ଧାର ସାଧନକରିବା ପରେ ଆପଣ ମୋ ସହିତ କଥୋପକଥନ କରୁଥିଲେ, ସ୍ମରଣ ଅଛି କି ?

ରାଜା—[ସ୍ୱଗତ] ସେହି ଦୃଶ୍ୟ—ସେହି ଅଗ୍ନି ମୂର୍ତ୍ତି ବିଶ୍ୱାମିତ୍ର ମହର୍ଷିଙ୍କର ସେହି ପ୍ରଚଣ୍ଡ କ୍ରୋଧ କଦାପି ଭୁଲିପାରିବ ନାହିଁ । ମହର୍ଷି ବର୍ତ୍ତମାନ ସରଣ କରାଇଦେଇ ମୋର ହୃତକର୍ମ ଜାତ କରାଇ ଦେଉଅଛନ୍ତି, କିନ୍ତୁ ଭୟ କାହିଁକି; ଧର୍ମକୁ ଆଶ୍ରୟ କଲେ କାହାରି କିଛି ଭୟ ନାହିଁ । [ପ୍ରକାଶ୍ୟେ] ମହର୍ଷେ ! ସମସ୍ତ ବିଷୟ ସ୍ମରଣ ହେଉଅଛି । କି ଉଦ୍ଦେଶ୍ୟରେ ଭଗବତ୍ ଶୁଭାଗମନ କରିଅଛନ୍ତି । ଜାଣିବାକୁ କୌତୂହଳ ଜାତ ହେଉଅଛି । କହିବା ବାହୁଲ୍ୟ ମାତ୍ର, ଯେ ଆପଣଙ୍କର ଶୁଭାଗମନରେ ରାଜା ପ୍ରଜା ଉଭୟେ ସବିଶେଷ ଅନୁଗୃହୀତ ହୋଇଅଛନ୍ତି ।

ବିଶ୍ୱାମିତ୍ର—ଯେଉଁ ଉଦ୍ଦେଶ୍ୟରେ ମହାରାଜାଙ୍କ ଦ୍ୱାରସ୍ଥ ହୋଇଅଛି, ତାହା ପରିତ୍ୟାଗ କରିବାକୁ ଇଚ୍ଛା ହେଉଥିଲା; କିନ୍ତୁ ଆପଣଙ୍କର ସୁଧାମୟ ବଚନ ଶୁଣି ଦ୍ୱିଗୁଣ ଉତ୍ସାହିତ ହୋଇଅଛି ।

ରାଜା—କି କାର୍ଯ୍ୟ ସାଧନ କରି ମୁଁ ଆପଣଙ୍କର ଆଶୀର୍ବାଦଭାଜନ ହେବି ?

ବିଶ୍ୱାମିତ୍ର—ମହାରାଜା ! ମୋର ଉଦ୍ଦେଶ୍ୟ; ଆପଣଙ୍କଠାରୁ ମୁଁ କିଛି ଦାନ ଗ୍ରହଣ କରିବି ।

ରାଜା—ତାହାହେଲେ ପ୍ରକାଶ କରନ୍ତୁ ।

ବିଶ୍ୱାମିତ୍ର—ମହାରାଜ, ଆପଣ ପ୍ରତିଜ୍ଞାବଦ୍ଧ ନ ହେଲେ ଦାନର ଉଦ୍ଦେଶ୍ୟ ବା ଆଶା ବ୍ୟକ୍ତ କରିବାକୁ ମନରେ ଆଶଙ୍କା ହେଉଅଛି ।

ରାଜା—ମହାଭାଗ ! ଦାନ ଆଶାରେ ଆସି ଅଦ୍ୟାବଧି କୌଣସି ବ୍ୟକ୍ତି ଫେରିଯାଇ ନାହାନ୍ତି । ଦାନର ବିଷୟ ବ୍ୟକ୍ତ କରନ୍ତୁ, ଇନ୍ଦ୍ରାଦି ଦେବତାଗଣ ତାହା ପ୍ରାପ୍ତ ହେବା ବିଷୟରେ ମୋତେ ବାଧା ଦେଇପାରିବେ ନାହିଁ ।

ବିଶ୍ୱାମିତ୍ର—ମହାରାଜ ! ଆପଣ ଯେପରି ଦାନଶୀଳ, ସେହିପରି ପ୍ରତାପନ୍ୱିତ, ସନ୍ଦେହ ନାହିଁ, କିନ୍ତୁ ପ୍ରତିଜ୍ଞାରେ ଆବଦ୍ଧ ନ ହେଲେ ଧାନ ବିଷୟ ପ୍ରକାଶ କରିପାରିବି ନାହିଁ ।

ରାଜା—ତାହାହେଲେ କିପରି ପ୍ରତିଜ୍ଞା କରିବାକୁ ହେବ, ପ୍ରକାଶ କରନ୍ତୁ ।

ବିଶ୍ୱାମିତ୍ର—ଯଦି ଦାନ ଦେବାକୁ ଆପଣ ଏତେଦୂର ଆଗ୍ରହ ଦେଖାଉଅଛନ୍ତି, ତାହାହେଲେ ଗଙ୍ଗୋଦକ ଓ ଅଗ୍ନି ସ୍ପର୍ଶକରି ପ୍ରତିଜ୍ଞା କରନ୍ତୁ ।

ରାଜା—[ଇଙ୍ଗିତ କରିବାରୁ ରାଣୀ ଗଙ୍ଗୋଦକ ଓ ଅଗ୍ନି ଘେନି ପୁନଃ ପ୍ରବେଶ]

ରାଣୀ—ମହାରାଜ ! ମୋର ଦକ୍ଷିଣ ହସ୍ତ ଓ ଦକ୍ଷିଣ ଭ୍ରୂଲତା ସ୍ପନ୍ଦିତ ହେଉଅଛି ।

ବିଶ୍ୱାମିତ୍ର—ମହାରାଜ ! ଶୀଘ୍ର ଅଗ୍ନି ସ୍ପର୍ଶକରି ବାକ୍ୟ ଉଚ୍ଚାରଣ କରନ୍ତୁ ।

ରାଜା—[ଅଗ୍ନିପାତ୍ର ସ୍ପର୍ଶକରି] ସତ୍ୟ କରିଲି ।

ବିଶ୍ୱାମିତ୍ର—ବୀର ! ଆପଣଙ୍କର ପୁତ୍ର, କଳତ୍ର, ଦେହ ଏବଂ ମୁଖୁପରେ ଯାହା ସଙ୍ଗରେ ଯାଏ, ସେହି ଧର୍ମ ମୋର ପ୍ରୟୋଜନ ନାହିଁ । ସାଗର, ଗ୍ରାମ, ପର୍ବତ ଓ ପତ୍ତନ ସମେତ ପୃଥିବୀ, ଅଶ୍ୱ, ଗଜ ଓ ରଥ ପୂର୍ଣ୍ଣ ସମସ୍ତ ରାଜ୍ୟ, ପ୍ରାସାଦ, କୋଷ, ବଳ ପ୍ରଭୃତି ଭାବତୀୟ ବସ୍ତୁ ପ୍ରଦାନକରନ୍ତୁ ।

ରାଜା—ତାହାହେଲେ ମୁଁ ଅଦ୍ୟ ସସାଗରା ପୃଥିବୀ ଆପଣଙ୍କୁ ପ୍ରଦାନ କଲି ।

ବିଶ୍ୱାମିତ୍ର—[ସିଂହାସନରେ ଉତ୍ତମରୂପେ ସଗର୍ବରେ ବସି] ମହାରାଜ ! ଅଦକ୍ଷିଣା ଦାନର ଫଳ ନାହିଁ । ରାଜସୂୟ ଯଜ୍ଞ କରିବାକୁ ବିଶେଷ ଉତ୍ସୁକ ଅଛୁ । ତଦନୁରୂପ ଦକ୍ଷିଣା ଦାନ କରନ୍ତୁ ।

ରାଜା—ଅମାତ୍ୟବର ! ଦାନର ଦକ୍ଷିଣା ସ୍ୱରୂପ ବିଶ୍ୱାମିତ୍ରଙ୍କୁ ସପ୍ତକୋଟି ସୁବର୍ଣ୍ଣ ମୁଦ୍ରା ପ୍ରଦାନ କର ।

ବିଶ୍ୱାମିତ୍ର—ମହାରାଜ ! ଆପଣ ବୁଦ୍ଧିଭ୍ରଷ୍ଟ ହେଉଅଛନ୍ତି । ଆପଣ ବର୍ତ୍ତମାନ ରାଜା ନୁହନ୍ତି । ଅମାତ୍ୟଙ୍କୁ ଆଦେଶ କରିବାର କ୍ଷମତା ନାହିଁ । ରାଜକୋଷରେ ଆପଣଙ୍କର କୌଣସି ଅଧିକାର ନାହିଁ । ତାହା ମୋର—କାରଣ ରାଜକୋଷ, ରଥ ଗଜାଦି ସହିତ ପୃଥିବୀ ରାଜ୍ୟ ପ୍ରଦାନ କରିଅଛନ୍ତି ।

ରାଣୀ—ହା ଦୈବ । ହା ବିଧି [ରୋଦନ]

ବିଶ୍ୱାମିତ୍ର—ମହାରାଜ୍ଞି ! ଯଦି ଦାନଟି ଫେରାଇ ନେବାର ଇଚ୍ଛାଥାଏ, ତେବେ ଫେରାଇ ନିଅନ୍ତୁ ।

ରାଣୀ—ମହାଭାଗ ! ପ୍ରତିଜ୍ଞାବଦ୍ଧ ହୋଇ ଆଉ କପରି ଆପଣଙ୍କଠାରୁ ରାଜ୍ୟ ଫେରାଇ ନେବୁ ?

ବିଶ୍ୱାମିତ୍ର—ହରିଶ୍ଚନ୍ଦ୍ର ! ତୁମ୍ଭେ ଆମ୍ଭଙ୍କୁ ସମସ୍ତ ରାଜ୍ୟ, ପ୍ରାସାଦ, ବଳ ପ୍ରଭୃତି ଦାନ କରିଅଛ । ବର୍ତ୍ତମାନ ପୃଥିବୀର ରାଜା କିଏ ? କାହାର ଆଜ୍ଞାରେ ମର୍ତ୍ତ୍ୟବାସୀ ପ୍ରଜାପୁଞ୍ଜ ଶାସିତ ହେବେ ?

ରାଜା—ଆପଣ ରାଜା, ସମସ୍ତେ ଆପଣଙ୍କର ଆଜ୍ଞାଧୀନ ।

ବିଶ୍ୱାମିତ୍ର—ତାହାହେଲେ ମୋର ଆଦେଶ ଅନୁସାରେ ତୁମ୍ଭେ ସ୍ତ୍ରୀ ଏବଂ ପୁତ୍ରକୁ ଘେନି ମୋର ରାଜ୍ୟରୁ ବହିଷ୍କୃତ ହୁଅ ।

ରାଜା—ପୃଥିବୀ, ପର୍ବତ, କାନନ, ସାଗର ସମସ୍ତ ଆପଣଙ୍କର ରାଜ୍ୟ । ମୁଁ କେଉଁ ସ୍ଥାନରେ ବାସ କରିବି ?

ବିଶ୍ୱାମିତ୍ର—ବାରାଣସୀ ନଗର କାହାରି ରାଜ୍ୟ ନୁହେଁ, ତୁମ୍ଭେ ସେହି ସ୍ଥାନକୁ ଯାଅ ।

ରାଜା—[ପୁତ୍ର ଓ ରାଣୀ ସହିତ ପ୍ରସ୍ଥିତ ପ୍ରାୟ]

ବିଶ୍ୱାମିତ୍ର—ଅଟକ କରୁ ରେ ଦୁଷ୍ଟ ପାଷାଣ୍ଡ ! ମିଥ୍ୟାବାଦୀ ! ତୁ ଦକ୍ଷିଣା ନ ଦେଇ କାହିଁ ଯାଉଅଛୁ ? ଶୀଘ୍ର ଦକ୍ଷିଣା ଦେ, ନଚେତ୍ ଅଭିଶାପଦ୍ୱାରା ଏହିକ୍ଷଣି ଭସ୍ମ କରିବି । [ଆକର୍ଷଣ]

ରାଜା—କ୍ରୋଧ ସମ୍ବରଣ କରନ୍ତୁ । ମୁଁ ଦାନର ଦକ୍ଷିଣା ଦେବା ସକାଶେ ଏକ ମାସ ସମୟ ଭିକ୍ଷା କରୁଅଛି ।

ବିଶ୍ୱାମିତ୍ର—ଉତ୍ତମ । ରାଜପୋଷାକ ଏବଂ ମୁକୁଟରେ ଆଉ ଅଧିକାର ନାହିଁ । ଯବ ମାସକ ମଧ୍ୟରେ ଦକ୍ଷିଣା ଦେବୁ, ତା ହେଲେ ରାଣୀଙ୍କର ଏବଂ କୁମାର ରୋହିତାଶ୍ୱଙ୍କର ସମସ୍ତ ଆଭରଣ ମୋଠାରେ ରଖିଯିବାକୁ ହେବ ।

ରାଜା—ଆମ୍ଭେମାନେ ତାହା ହିଁ କରିବୁ ।

[ରୋହିତାଶ୍ୱ ଦେହରୁ ରାଣୀ ସମସ୍ତ ଅଳଙ୍କାର ଗ୍ରହଣପୂର୍ବକ ବିଶ୍ୱାମିତ୍ରଙ୍କୁ ପ୍ରଦାନ । ରାଣୀଙ୍କର ସ୍ୱ ଦେହରୁ ସମସ୍ତ ଅଳଙ୍କାର ବିଶ୍ୱାମିତ୍ରଙ୍କୁ ପ୍ରଦାନ] [ରାଜା ନିଜର ମୁକୁଟ ଏବଂ ପୋଷାକ ପ୍ରଦାନ ।]

ବିଶ୍ୱାମିତ୍ର—[ଶିଷ୍ୟ ପ୍ରତି] ସମସ୍ତଙ୍କୁ ଗୈରିକ ବସ୍ତ୍ର ପ୍ରଦାନ କର ।
[ରାଜା, ରାଣୀ, ରୋହିତାଶ୍ୱ ନେପଥ୍ୟକୁ ଯାଇ ଗୈରିକ ବସ୍ତ୍ର ପରିଧାନ କରି ପୁନଃ ପ୍ରବେଶ]

[ସିଂହାସନରେ ସଗର୍ବରେ ଉପବିଷ୍ଟ ହୋଇ] ହରିଶ୍ଚନ୍ଦ୍ର, ତୁମ୍ଭେ ଅଦକ୍ଷିଣା ଦାନର ଫଳ ଏ ପର୍ଯ୍ୟନ୍ତ ପ୍ରାପ୍ତ ହୋଇନାହିଁ । କିନ୍ତୁ ମୋର ବିଶ୍ୱାସ ହେଉନାହିଁ, ତୁମ୍ଭେ ଏକ ମାସ ମଧ୍ୟରେ ଦାନର ଦକ୍ଷିଣା ଦେଇ ପାରିବ । ରାଜାର ଆଚରଣ ଧର୍ମ ଓ ସତ୍ୟନିଷ୍ଠା କ୍ଷୀଣ ନ ହେଲେ ପ୍ରଜାମାନଙ୍କର କଦାପି ଅମଙ୍ଗଳ ହୁଏନାହିଁ । ରାଜ୍ୟରେ ତୁମ୍ଭେ ଯେଉଁ ଅଶାନ୍ତ ଅନଳ ପ୍ରଜ୍ୱଳିତ କରିଥିଲ, ତହିଁରୁ ଅନୁମାନ ହୁଏ, ତୁମ୍ଭେ ସତ୍ୟଭ୍ରଷ୍ଟ

ହୋଇଅଛ । ଯାହାହେଉ, ମୋର ଆଦେଶାନୁସାରେ ବାରାଣସୀରେ ଏହି ଶିଷ୍ୟଙ୍କ ଗୃହରେ ସସ୍ତ୍ରୀକ, ସପୁତ୍ର ଆବଦ୍ଧ ହେଲ ପ୍ରାୟ ରହିପାର । ସ୍ୱକ-ବ ହିରେ ଯ୍ଥାନାନ୍ତରକ । ତୁମ୍ଭେ ଦକ୍ଷିଣା ନ ଦେଇ ମୋତେ ପ୍ରତାରଣା କରି-ପାର, ଏହିପରି ଆଶଙ୍କା ମୋ ମନରେ ଜାତ ହେଉଅଛୁ ;

ପ୍ରଥମ ମନ୍ତ୍ରୀ—ସୁଖାର ସତ୍ୟସନ୍ଧ ମହାରାଜଙ୍କ ପ୍ରତି ଏପରି କଟୂବାକ୍ୟ ଉଚିତ କି ?

ବିଶ୍ୱାମିତ୍ର—ଚଣ୍ଡାଳ ! କଣ କହିଲୁ ? [କ୍ରୋଧରେ ସିଂହାସନରୁ ଉଠି ଦଣ୍ଡାୟମାନ]

ମାଙ୍ଗଲ୍ୟ—ଆରେ ଭୃତ୍ୟ ହୋଇ ଏତେ ବଡ ଆସ୍ପର୍ଦ୍ଧା ! ଗୁରୋ ! ଏହି ଦୁଷ୍ଟକୁ ସବାଦୌ ଅମାତ୍ୟର କାର୍ଯ୍ୟରୁ ବହିଷ୍କୃତ କରିବାକୁ ଦେବ ।

ରାଜା—ମୋ ସକାଶେ ଅମାତ୍ୟଙ୍କର ପଦଚ୍ୟୁତ ହେବା ବାଞ୍ଛନୀୟ ନୁହେଁ ।

ବିଶ୍ୱାମିତ୍ର—ସାବଧାନ ! ବୁଦ୍ଧିହୀନ ବ୍ୟକ୍ତିପରି କଥା କହିବନାହିଁ ।

ମାଙ୍ଗଲ୍ୟ—ଅରେ ରେ ହରିଶ୍ଚନ୍ଦ୍ର ! ତୁ ଏ ରାଜ୍ୟରେ କିଏ, ଆମ ଉପରେ ବଢି ବଢି କଥା କହିବୁ ?

ପ୍ରଥମ ମନ୍ତ୍ରୀ—ପ୍ରଭୋ ! ମୁଁ ବର୍ତ୍ତିମାନଠାରୁ ଅମାତ୍ୟ କାର୍ଯ୍ୟ ପରିତ୍ୟାଗ କଲି । ଯେଉଁମାନେ ସୁନୀତରେ ପରିଚାଳିତ ହୁଅନ୍ତିନାହିଁ, ସେମାନଙ୍କ ଅଧୀନରେ ମୁଁ କାର୍ଯ୍ୟ କରିବାକୁ ଅକ୍ଷମ ।

ବିଶ୍ୱାମିତ୍ର—[କ୍ରୁଦ୍ଧହୋଇ] ଏହି ମୁହୂର୍ତ୍ତିରେ ଯାଅ ଉଠ,—ଏହି ମୁହୂର୍ତ୍ତିରେ ଯାଅ !

ମାଙ୍ଗଲ୍ୟ—[ପ୍ରସ୍ଥିତ ପ୍ରାୟ ମନ୍ତ୍ରୀଙ୍କୁ ମୁଷ୍ଟି ଦେଖାଇ] ଯା, ଯା, ତୋର ପରମ ଭାଗ୍ୟ ମାଡ଼ ନ ଖାଇଲୁ ।

ବିଶ୍ୱାମିତ୍ର—ହରିଶ୍ଚନ୍ଦ୍ର ! ଇଚ୍ଛା ହେଲେ ଯାଚଣା କରି ରାଜ୍ୟଟି ଫେରାଇ ନଅନ୍ତୁ । ମତେ ଏପରି ବ୍ୟବହାର ରୁଚିକର ହେଉନାହିଁ ।

ରାଜା—ଯାଚଣା କରିବା ହରିଶ୍ଚନ୍ଦ୍ରର ଅଭ୍ୟାସ ନୁହେ ।

ବିଶ୍ୱାମିତ୍ର—ଦେଖ ମାଙ୍ଗଳି ! ହରିଶ୍ଚନ୍ଦ୍ରକୁ କଦାପି ଛାଡ଼ିବ ନାହିଁ । [ଇଙ୍ଗିତ କରି ମୁଷ୍ଟି ଦେଖାଇ] ଯେ କୌଣସି ଉପାୟରେ ଦକ୍ଷିଣା ଆଦାୟ କରିବ ।

ମାଙ୍ଗଳି—ବିଶ୍ୱାମିତ୍ର ଶିଷ୍ୟକୁ ସେ କଥା ବୁଝାଇ କହିବା ନିଷ୍ପ୍ରୟୋଜନ । ଏ ହରିଶ୍ଚନ୍ଦ୍ର ! କି କାମ କରିପାରିବୁ କହ । ଦଉଡ଼ି ବଳିବା ତୋ ପକ୍ଷରେ ସହଜ ହେବ । ଚାଲ—ଚାଲ, ଶୀଘ୍ର ଚାଲ [ବିଶ୍ୱାମିତ୍ରଙ୍କ ପ୍ରତି] କାଶୀ ଧାମକୁ ଗଲେ ମୋର ଖଣ୍ଡେ ରଥ ଆବଶ୍ୟକ ।

ବିଶ୍ୱାମିତ୍ର—ତା ହେଲେ ତୁମ୍ଭେ ଖଣ୍ଡିଏ ରଥ ନିଅ । କିନ୍ତୁ ହରିଶ୍ଚନ୍ଦ୍ର ଯାଚଣା କରିବାକୁ ନାରାଜ । ତାହାଙ୍କର କିମ୍ବା ଏମାନଙ୍କର ରଥର ଆବଶ୍ୟକ ନାହିଁ । [ରାଜା, ରାଣୀ, ରୋହିତାଶ୍ୱ, ମାଙ୍ଗଳିର ପ୍ରସ୍ଥାନ ଓ ଏକ ଦିଗରେ ଅନ୍ୟ ସମସ୍ତଙ୍କର ପ୍ରସ୍ଥାନ । ]

[ପଟକ୍ଷେପଣ]

# ଦ୍ୱିତୀୟ ଦୃଶ୍ୟ

## [ଦେବୀ ମନ୍ଦିର]

(ରାଜା, ରାଣୀ, ରୋହିତାଶ୍ୱ, ମାଙ୍ଗଳି ଓ ନର୍ତ୍ତକୀ ବୃନ୍ଦ)

ରାଣୀ—[ହାତଯୋଡ଼ି ଶୋକ ସ୍ୱରେ]

ତୁହିତାରା ନିଜସ୍ୱନୀ ଯୋଗୀ ରାଜ ରାଣୀ ତାରିଣୀ ଯୋଗିନୀ ଶ୍ୟାମା,
ତୁହି କଲୁଷ ନାଶିନୀ ବିପଦ ବାରିଣୀ ସମ ବିନାଶିନୀ ଗୋ ମା ।୧।
ତୁହି ଭବ ମରୁଭୂମେ ଗଙ୍ଗା ଗୋ ଦାବଦଗ୍ଧ ଆନନ୍ଦ ଲହରୀ ଗ୍ରସ୍ତା,

ତୁହି କାମିନୀ ଅନ୍ତରେ ରତନ ମନ୍ଦିରେ ରଙ୍ଗ କୁହୁକିନୀ ମାୟା ।୨।
ତୁହି ଆନନ୍ଦ ଅନନ୍ତ ନବୀନ ବସନ୍ତ ରବି ଶଶୀ ଗ୍ରହ ତାରା।
ତୁହି ପ୍ରକୃତି ପରମା ନିତ୍ୟ ବ୍ରହ୍ମ ରମା ଅନନ୍ତ ପୀୟୂଷ ଧାରା ।୩।
ତୁହି ଭକତ ପାଳିନୀ ତୋଷିଣୀ ମୋହିନୀ ତାରିଣୀ ଶୋକ ପାସୋରା।
ତୁହି ବିପଦ ଉର୍ମିରେ ସନ୍ତାପ ସାଗରେ ଧ୍ରୁବ ଜ୍ୟୋତି ଧ୍ରୁବ ତାରା ।୪।

ମା ଗୋ ! ଦୁର୍ଗତି ନାଶିନୀ ଦୁର୍ଗେ ! ତୋର ଅଭୟ ଚରଣରେ ଏହି ମୋର ଶେଷ ବିଦାୟ । ତୋର ଅପାର କରୁଣାରେ ଦ୍ୱିତୀୟ ଚନ୍ଦ୍ରମା ପ୍ରାୟ ଏହି କୁମାର ରୋହିତାଶ୍ୱଙ୍କୁ ପ୍ରାପ୍ତ ହୋଇଥିଲି । ଆଜି ସେ ପଦବ୍ରଜରେ କାଶୀ ଧାମକୁ ଯାଉଅଛି । ତାହାର ସୁକୁମାର ଶରୀରରେ ରତ୍ନ ବିଜଡ଼ିତ ନାନାବିଧ ଅଳଙ୍କାର ସଜ୍ଜିତ ହୋଇଥିଲା । ସେହି ରାଜକୁମାର ବର୍ତ୍ତମାନ ଭିକ୍ଷୁବେଶରେ ପଦବ୍ରଜରେ ଗମନ କରୁଅଛି । ଜଗଜ୍ଜନନୀ ! ତୋହରି କୃପାରେ କେତେ କେତେ ମରୁଦେଶ ସ୍ୱର୍ଗ ରାଜ୍ୟରେ ପରିଣତ ହୋଇଅଛି । ତୋହରି ଆଦେଶରେ କେତେ କେତେ ରାଜା ପଥରେ ଭିକ୍ଷୁ ହେଉଅଛନ୍ତି । କିନ୍ତୁ ତାରିଣୀ ମହାମାୟା ! ଯେଉଁ ରାଜଶରୀର ଶତ ଦାସ ଦାସୀଙ୍କର ସେବ୍ୟ ଥିଲା, ସେହି ଇନ୍ଦ୍ରତୁଲ୍ୟ ମହାରାଜାଙ୍କୁ କିପରି ଦେଖିବି, ସ୍ୱହସ୍ତରେ ନୀଚ କାର୍ଯ୍ୟ କରିବେ । [ରୋଦନ] ମା ଗୋ ! ଏହି ଅପାର ଶୋକ ସାଗରକୁ କିପରି ପ୍ରାଣ ଧାରଣ କରି ସନ୍ତରଣ କରିବି ଚିନ୍ତା କରି ପାରୁନାହିଁ । ଭକ୍ତ ବତ୍ସଳେ, ତୋର ଶ୍ରୀଚରଣରେ ଏତିକି ମାତ୍ର ପ୍ରାର୍ଥନା ଯେ ରୋହିତାଶ୍ୱ ଏବଂ ମୋର ପରମ ଆଦରଣୀୟ ସ୍ୱାମୀ ପ୍ରାଣରେ ବିନଷ୍ଟ ନ ହେଉନ୍ତୁ ।

[ଦେବୀଙ୍କର ଚରଣରେ ପ୍ରଣିପାତ]

ରାଜା—[କରଯୋଡ଼]

କୋଟି କୋଟି ଭବ ଭୃଷ୍ଟ ଯାହାର ଆଦେଶେ ।
ଅଗଣନ ପ୍ରାଣୀ ଯାର ଇଚ୍ଛାଧୀନ ହୋଇ
ଜନ୍ମ ମୃତ୍ୟୁ ଦ୍ୱାରେ ଦ୍ୱାରେ ଭ୍ରମନ୍ତି ନିୟତ
ତାହାର ଆଦେଶେ ରାଜା ସିଂହ ପଦ ପୂଜ୍ୟ
ତାର ଆଜ୍ଞା ଅନୁସର ଭିକ୍ଷୁ ବାସସ୍ଥାନ ।
ଜନ୍ତୁ କ ଶ୍ରୀପଣ ଷିପ୍ତ ନର ଅହଂକାର !
ଅକାରଣ ଶୋକପ୍ରଦ ଯାତନା ବାମ୍ଭକ
ଦେଖି ଏ ଶ୍ରୀପଣ ଖେଳା ପ୍ରକୃତର ଲୀଳା
ଗିରିରାଜ ହିମବନ୍ତ ଝବହେଲା କାଶ୍ମି,
ମଣକ ଆସ୍ପର୍ଦ୍ଧା ପ୍ରାସ୍ତେ ମାନବାସ୍ତ ଦର୍ପ
ଆସକ୍ତ ଷଣଭଙ୍ଗୁର ତୁଚ୍ଛ ସୁଖ ଦୁଃଖ ।
ଅହଙ୍କାର ମଦ ମତ୍ତ ନୀଚ ଦୃଷ୍ଟି ନର
ସ୍ୱର୍ଗେ କି ଉର୍ଦ୍ଧ୍ୱକୁ କେବେ ? ଅଜ୍ଞାନ ଉନ୍ମାଦେ
ଭୁଲଯାଏ ମାଗୋ ତୋର ପଙ୍କଜ ଚରଣ,
ଅମୀୟ କରୁଣା ସ୍ରୋତ ଯହିଁରୁ ଝରଇ ।
ଯେ ପଦ ଚନ୍ତନେ ଧ୍ୟାନେ ଚମକାଇ ସୁଖ
ଅଳୀକ ସ୍ୱପନ ସମ, ଯେ ପଦ ଆଶ୍ରୟେ
ଦୀନ ହୀନ ଭିକ୍ଷୁ ତୁଚ୍ଛ କରେ ରାଜସୁଖ
ଶୋକ ତପ୍ତ ହୃଦେ ବହେ ମଲୟ ପବନ ।
ଜ୍ଞାନ ଖଡ଼୍ଗେ ଛିନ୍ନ ହୁଏ ମାୟାର ବନ୍ଧନ,
ସେହି ପଦେ ମାଗୋ ଦୁର୍ଗେ ଦୁର୍ଗତି ନାଶିନି ।
ଥାଉ ଅଚଳା ଭକତି ଏତିକି ପ୍ରାର୍ଥନା ।

ନଟୀବୃନ୍ଦ—ମହାରାଜ ! ଯାହାର ଆଶ୍ରୟରେ ରହି ଆମ୍ଭେମାନେ ପ୍ରତିଦିନ ନୃତ୍ୟ ଗୀତରେ ଜୀବନ ଯାପନ କରୁଅଛୁ, ସେହି କରୁଣାମୟୀ ଆପଣଙ୍କର ସହାୟ ହୁଅନ୍ତୁ । ମହାରାଣି ! ବିଦାୟ ଦେଉଛୁ, କିନ୍ତୁ ହୃଦୟରୁ ରକ୍ତଧାର ଝରୁଅଛି । [ରାଜାରାଣୀଙ୍କର ପାଦଦେଶରେ ସମସ୍ତଙ୍କର ପ୍ରଣାମ]

[ମନ୍ତ୍ରୀ, ସେନାପତି, ପୁଣ୍ୟଶ୍ଳୋକ ଏବଂ ଦସ୍ୟୁବୃନ୍ଦଙ୍କର ପ୍ରବେଶ]

ସେନାପତି—ପ୍ରଭୋ ! ଅତି କଷ୍ଟରେ ଅନୁମତି ନେଇ ମହାରାଜଙ୍କୁ ଶେଷ ସାକ୍ଷାତ କରିବାକୁ ଆସିଅଛୁ । ଦୟାମୟ ହରି ଆପଣଙ୍କ ମନରେ ଶାନ୍ତି ଦେବେ । କୋଟି କୋଟି ନରନାରୀଙ୍କ ଆଶୀର୍ବାଦ ଆପଣଙ୍କ ଉପରେ ।

ପୁଣ୍ୟଶ୍ଳୋକ—ମହାରାଜ ! ମୋର ସହସ୍ର ଅପରାଧ ମାର୍ଜ୍ଜନା କରନ୍ତୁ । ବିଶ୍ୱାମିତ୍ର ଋଷି ଶଣ୍ଢାଦଣ୍ଡା ପ୍ରାପ୍ତେ ରାଜ୍ୟକୁ ଆସିଅଛନ୍ତି । ବର୍ତ୍ତମାନ ସମସ୍ତେ ଶାନ୍ତ ଓ ପୂର୍ବ ପ୍ରାପ୍ତ ଧର୍ମଗୁରୁ । ରାଜାରାଣୀଙ୍କ ସକାଶେ ନଗର ମଧ୍ୟରେ ହାହାକାର ଧ୍ୱନି ଉଠୁଅଛି । ଦେଖାଯାଉ ଫେର ଶଣ୍ଢାଦଣ୍ଡା କୁଆଡ଼କୁ ଟାଣିବ ।

ମାଙ୍ଗଲ୍—ଆରେ ଚୁପ୍ ! ଏତେ ବଡ଼ ଆସ୍ପର୍ଦ୍ଧା ! ଏତେ ବଡ଼ କଥା ଶୁଣୁଁ ଶୁଣୁଁ ମୋ ଆଗରେ ! ହରିଶ୍ଚନ୍ଦ୍ର ଏହି ଉଦ୍ଧତ ପ୍ରଜାର ଶୂଳୀ ବ୍ୟତୀତ ଆନ୍ୟକିଛି ଉପାୟ ନାହିଁ ।

ସେନାପତି—ବିଶ୍ୱାମିତ୍ର ମହର୍ଷିଙ୍କୁ ଶଣ୍ଢାଦଣ୍ଡା କହି ଅପମାନ କରିବାଦ୍ୱାରା ଆପଣଙ୍କର ଅନ୍ୟାୟ ହୋଇଅଛି । ସାବଧାନ ହେବ । ନଚେତ୍ ଦଣ୍ଡ ହେବ ।

[ନଟୀବୃନ୍ଦ, ସେନାପତି, ପୁଣ୍ୟଶ୍ଳୋକ ପ୍ରଭୃତିଙ୍କର ପ୍ରସ୍ଥାନ]

[ବିଶ୍ୱାମିତ୍ରଙ୍କର ପ୍ରବେଶ]

ବିଶ୍ୱାମିତ୍ର—[ସକ୍ରୋଧରେ] ମିଥ୍ୟାବାଦୀ ! ଦୁର୍ବୃତ୍ତ ! ତୋର କଥାରେ ଆଉ ମୋ ବିଶ୍ୱାସ ନାହିଁ । ତୁ ରାଜ୍ୟ ଦାନ କରି ପୁନଶ୍ଚ ରାଜ୍ୟସ୍ଥ ପ୍ରଜାମାନଙ୍କଠାରୁ ମଧୁରବାକ୍ୟ, ସ୍ତୁତିବଚନ ଶୁଣିବାକୁ ପ୍ରୟାସୀ ହୋଇଅଛୁ ।

ରାଣୀ—[ଭୂପତିତ ହୋଇ, କାତର ସ୍ୱରେ] ମହାରାଜ ! ମୋର ହସ୍ତପଦ ସ୍ପନ୍ଦିତ ହେଉଅଛି । ମୁଁ ଚାଲିବି କପରି ? ଏହି ଅପମାନରେ ମୋର ହୃଦୟ ବିଦୀର୍ଣ୍ଣ ହେଉଅଛି ।

ରାଜା—ତଥାପି ଯିବାକୁ ହେବ । ତୁମ୍ଭର କୋମଳ ପଦରେ ବ୍ୟଥା ଲାଗିବ, ଏହା ଦେବର ଇଚ୍ଛା ଥିଲା ।

[ହସ୍ତଧରି ଆକର୍ଷଣ]

ବିଶ୍ୱାମିତ୍ର—[କ୍ରୋଧରେ] ଦୂର ହୁଅ, ଦୂର ହୁଅ ! [ରାଣୀଙ୍କୁ ଠେଲି ଦେଇ] ମୁଁ ରାଜା ! ମୋ ବଚନରେ ଅପମାନ !

[ପୁନଶ୍ଚ ପ୍ରହାର କରିବା କାଳରେ ରାଜାରାଣୀ ଉଭୟଙ୍କର ପ୍ରସ୍ଥାନ]

[ଆକାଶରେ ପଞ୍ଚ ବିଶ୍ୱଦେବତା]

ବିଶ୍ୱଦେବତା—ହା ଦୈବ ! ହା ବିଧି ! ଏହି ଦାରୁଣ ଦୁଃଖ ଦେଖି ପାଷାଣ ହୃଦୟ ବିଗଳିତ ହେବ । ଏହି ବିଶ୍ୱାମିତ୍ରଙ୍କୁ କୌଣସି ଲୋକରେ ସ୍ଥାନ ନାହିଁ । ପାପାତ୍ମା ପ୍ରଧାନ ଯାଜ୍ଞିକ ରାଜା ହରିଶ୍ଚନ୍ଦ୍ରଙ୍କୁ ରାଜ୍ୟରୁ ବଞ୍ଚିତ କଲା । ଆଉ କିଏ ଶ୍ରଦ୍ଧାସହକାରେ ଯଜ୍ଞରେ ପରମ ପବିତ୍ର ସୋମରସ ଆମ୍ଭମାନଙ୍କୁ ପ୍ରଦାନ କରିବ ।

ବିଶ୍ୱାମିତ୍ର—ସ୍ଥିରହୁଅ ଦେବତାବୃନ୍ଦ ! ତୁମ୍ଭେମାନେ ଏହି ପ୍ରରୁଷ ବଚନ ବ୍ୟବହାର କରିଥିବାରୁ ମୁଁ ଅଭିଶାପ ଦେଉଅଛି ଯେ ତୁମ୍ଭେମାନେ ସ୍ୱର୍ଗଚ୍ୟୁତ ହୋଇ ମନୁଷ୍ୟ ଦେହରେ ଜନ୍ମ ହେବ ।

ଦେବତାଗଣ—କ୍ଷମାକର ! କ୍ଷମାକର ପ୍ରଭୋ ! ଅପରାଧ କ୍ଷମାକର !

ବିଶ୍ୱାମିତ୍ର—କିନ୍ତୁ ମୋର ବାକ୍ୟ କଦାପି ମିଥ୍ୟା ହେବନାହିଁ । ଦ୍ୱାପର ଯୁଗରେ ତୁମ୍ଭେମାନେ ଦ୍ରୌପଦୀଙ୍କ ଗର୍ଭରେ ଜାତହେବ ଏବଂ କାମ କ୍ରୋଧ ରହିତ ହୋଇ କିଛୁକାଳ ରହିଲା ପରେ ଶତ୍ରୁ ହସ୍ତରେ ନିହତ ହୋଇ ପୁନଶ୍ଚ ସ୍ୱର୍ଗଲାଭ କରିବ । [ପ୍ରସ୍ଥାନ]

[ପଟକ୍ଷେପଣ]



# ତୃତୀୟ ଦୃଶ୍ୟ

## [ରାଜପଥ]

### (ମାଙ୍ଗଲ୍ୟର ପ୍ରବେଶ)

ମାଙ୍ଗଲ୍ୟ—ସତ୍ୟ ପ୍ରତିଜ୍ଞା ପାଳନରେ ଏତେଗୁଡ଼ାଏ ଦୁଃଖ ଅଛି । ଏ ହରିଶ୍ଚନ୍ଦ୍ର ! ଭଲ ଟିକିଏ ଶୀଘ୍ର ଶୀଘ୍ର ଆସ । ଟିକିଏ ଗୋଡ ଉଠେଇ ପକାଅ । ରାଜା ଅଛା ଚାଲୁଛି । କିନ୍ତୁ ରାଣୀଟି ତାର ବୋଝ । ଆଉ ବୋଝ ଉପରେ ନଳିତା ବିଡା ସେହି ରୋହିତାଶ୍ୱ ରାଜକୁମାର ! ହୋଉ, ହୋଉ, ସୁଖେ ଦୁଃଖେ ଗୋଟିଏ ଗୋଟିଏ ଚାଲୁଛନ୍ତି । ସଂସାର ମଧ୍ୟରେ ପ୍ରଧାନ ବେକୁବ୍, ଯେଉଁମାନେ ସତ୍ୟବାଦୀ । ଯେଉଁମାନେ ମାଗି ଜାଣନ୍ତି ନାହିଁ—ସେମାନେ ଦୋସର ବେକୁବ୍ । ଏହି ଦୁଇ ବଡ଼୍‌ଗୁଣ ହରିଶ୍ଚନ୍ଦ୍ରଙ୍କଠାରେ ମିଳିଥିବାରୁ ସେ ବହୁତ-ସୁଟରେ ଧୀରେ ଧୀରେ ଚାଲୁଅଛି । ଆଉ ଆମ୍ଭେ ବାଲ୍ୟାବସ୍ଥାରୁ ପାଠଢଗରେ ତଥା ସଂସାର କ୍ଷେତ୍ରରେ ମିଥ୍ୟା ଷୋଡ଼ଶୋପଚାର ପୂଜାକରି ଆସୁଥିବାରୁ, ଏବଂ ଯାଂଚଞ୍ଚା ବିଷୟରେ ଦିଗ୍‌ଗଜ ଉପାଧି ପାଉଥିବାରୁ କାଞ୍ଚନ ରଥରେ ଆରୋହଣ କରିଅଛୁ । (କ୍ଷଣକାଳ ରହି) ହାୟ ! ହାୟ ! ହରିଶ୍ଚନ୍ଦ୍ରଙ୍କୁ କି ବୁଦ୍ଧି କାହିଁକି ଦଶିଲା ? ସତ୍ୟ ପ୍ରତିଜ୍ଞାରେ ଆବଦ୍ଧ

ହୋଇ ରାଜ୍ୟଟାକୁ ଦାନ କରିଦେଲି । ହେଲା—ଭଲ ହୋଇଛି—ସବୁଦିନେ ରତ୍ନସିଂହାସନ ଭଲ ଲାଗେ ନାହିଁ । ଏବେ ଏହିପରି ଘାସ ଉପରେ ଶୋଇବା ଭଲ । ମୂଳ ଲାଗିବା ଭଲ—କିନ୍ତୁ ଫେର ବେଳୁଚ୍ ! ଦକ୍ଷିଣା ଦେବାପାଇଁ ମୋ ହସ୍ତରେ ଅବଧି । ଯଦି ଏହିକ୍ଷଣି ବୋକଣ୍ଠ ବୋଜଟ ପକାଇ ଚମ୍ପଟ ଦେବାକୁ କହେ ତାହାହେଲେ ମୁଁ କଦାପି ଅଟକାଇ ପାରିବ ନାହିଁ । ନା—ନା ; ରାଜା ଆଜ୍ଞା ! ସହଜରେ ଛାଡ଼ି ଦେବ ନାହିଁ । କାଶୀରେ ମୋର ନିବାସ । ଏଣିକେତେ ମୂଳ ଲଗେଇ ନେଇ ପରେ ଛଡ଼ାଇ ଦେବ । କିନ୍ତୁ ପତଙ୍ଗ କି ନିଆଁର ଶୀତଳ ସୁଖ ଛୁଇଁପାରେ ? ହାଃ, ହାଃ, ହାଃ, ହେଃ, ହୋଃ ଅଚ୍ଛା ! ଯଥାଭିଳାଷ ତାହା କରିବାକୁ ହେବ । ମୋର ତାବଡ଼ସ୍ତ ଗୁଣମାନ ଉତ୍ତମରୂପେ ବୁଢ଼ିଶୁଢ଼ି ବିଶ୍ୱାମିତ୍ର ମହର୍ଷି ଦୁଧରୁ ସର ଛାଙ୍କି ନେଲା ପ୍ରାୟ ଶିଷ୍ୟଟିଏ ବାଛି ନେଇଅଛନ୍ତି । କିନ୍ତୁ ଗୋଟାଏ କଥାଲାଗି ମୋର ସାର ଚିନ୍ତା । ବିଧାତା ବୁଦ୍ଧି ହୁଡ଼ିଛି । ମୋର ବା ଦୋଷ କଣ ? ମୁଁ କହୁଥିଲି, ବିଧାତା ମୋ ଦେହରେ ଯେଉଁ ଅନ୍ତଃକରଣ ଦେଇଛନ୍ତି, ତାକୁ ମାଂସପିଣ୍ଡରେ ତିଆରି ନ କରି, ମାଙ୍କଡ଼ା ପଥର କିମ୍ବା ନିତାନ୍ତ ପକ୍ଷରେ ଝାମା ଇଟାରେ ଗଢ଼ିଥିଲେ ସୁବୁଦ୍ଧିର ପରିଚୟ ଦେଇଥାନ୍ତା । କି ହୋ—ରହିଯିବ କି ପଛରେ ! ରାଣୀ—ଟିକିଏ ରହିଲବା ସୁଖ ଶିଖି ନିଅ । ମୁଁ ଆଉ ଅପେକ୍ଷା କରିପାରିବ ନାହିଁ । ଏହି ଗଛ ମୂଳରେ ସେମାନଙ୍କର ଆହାର ରଖିଦେବ । [ନେପଥ୍ୟକୁ ଯାଇ ଅହାର ସାମଗ୍ରୀ, ଲୋଟା ଆଣି ବୃକ୍ଷ ମୂଳରେ ସ୍ଥାପନକରି ଉଚ୍ଚସ୍ୱରେ] ହେ ହରିଶ୍ଚନ୍ଦ୍ର ! ହେ ହରିଶ୍ଚନ୍ଦ୍ର ! ଏଠି ରହିଲା ତୁମ୍ଭମାନଙ୍କର ଆହାର । ପେଟ୍ ଭରି ଦୁଇପ୍ରହର ପର୍ଯ୍ୟନ୍ତ ମୋ ସାଙ୍ଗରେ ବକ୍ ବକ୍ ହେବ ନାହିଁ । ଅଚ୍ଛା—କୁଆ କୁକୁର ଖାଇଯିବେ । ଖଣ୍ଡେ ପତର ଘୋଡ଼ାଇ ଦେଇ ଯିବା । [ପତର ଢାଙ୍କିଦେଇ ଉପରେ ପଥର ରଖି ପ୍ରସ୍ଥାନ]

[ରାଜା, ରାଣୀ, ରୋହିତାଶ୍ୱଙ୍କର ପ୍ରବେଶ]

ରୋହିତାଶ୍ୱ—ମା ! ମା ! ଭାରିଶୋଷ କଲାଣି । ଆଉ ଚାଲିପାରିବି ନାହିଁ । ଟିକିଏ ପାଣି ପିଇବି ।

ରାଣୀ—ସକାଳୁ ନିରାହାର ! ମହାରାଜ ! ଜଳଆଣି ଦିଅ । ଏତିକି କହିବାକୁ ଛାତି ଫାଟି ଯାଉଅଛି ।

[ମୁଖରେ ଅଞ୍ଚଳ ଦେଇ କ୍ରନ୍ଦନ]

ରାଜା—ଦେବି ! କାତର ହେବ ନାହିଁ । ବିପଦରେ ଧୈର୍ଯ୍ୟଧରି ରହିବା ଉଚିତ । ଧୈର୍ଯ୍ୟ ଏବଂ ଈଶ୍ୱରଭକ୍ତି ବର୍ତ୍ତମାନ ଏକମାତ୍ର ସମ୍ବଳ । ଦୂରରେ ଗୋଟିଏ ଜଳାଶୟ ଦିଶୁଛି । ମୁଁ ଶୀଘ୍ର ଜଳ ଆଣି ଦେବି । [କୁମାରପ୍ରତି] ବାପା ! ଆଉ କାନ୍ଦିବୁ ନାହିଁ । ମୁଁ ଏହିକ୍ଷଣି ଜଳ ଆଣି ଦେବି ।

[ଲୋଟା ନେଇ ରାଜାଙ୍କର ପ୍ରସ୍ଥାନ]

ରୋହିତାଶ୍ୱ—ମା କେତେ ଉଚ୍ଛୁର ହେବ ।

ରାଣୀ—ବାପା ଏହିକ୍ଷଣି ଆସିବେ । ମୁଁ ବିଛେଇ ଦିଏଁ । ଶୋଇପଡ଼, ବାଟ ଚାଲିଛୁ ପରା ! [ରୋହିତାଶ୍ୱର ଉପବେଶନ] [ରାଣୀ ବିଛେଇ ଦେବାରୁ ରୋହିତାଶ୍ୱର ତଦୁପରି ଶୟନ ଏବଂ ରାଣୀ କାନରେ ବିଞ୍ଚି ଦେଉଁ ଦେଉଁ ଶୋକଭରେ ଗୀତ]

ରତନ ପଲଙ୍କେ କୁସୁମ ଶୟନ ରୁଚି ନ ଲାଗଇ
ରଙ୍କ ରତନ ରେ,
ଆଜ ସେ କୁମର ହୋଇ ତୃଷାତୁର ଧୂଳି ଅଙ୍ଗେ ଲୋଟେ
ଏକାକୀ ପଥରେ ।। ୧ ।

ସେଧି ବିଡ଼ମ୍ବନା, ନିଷ୍ଠୁର ଶାସନା, ଶିଶୁ କୁସୁମରେ
ଅଶନି ତାଡ଼ନା,
ପୀୟୂଷରେ ବିଷ, ଦେଇଣ କି ଯଶ ଲଭଇ ସେ ବିଧି
ଦାରୁଣ ଅନ୍ତରେ ।। ୨ ।
ନବ ଆଭରଣ ରତନ ଭୂଷଣ ଦେବି ବୋଲି କହି-
ଥିଲି ଶରଧାରେ ।
ସେ ସୁଖ ସ୍ୱପନ ପ୍ରଭାତେ ବିଲୀନ ହୋଇଲା ବିଷାଦ
ସନ୍ତାପ ସାଗରେ ।। ୩ ।

[ଦଣ୍ଡାୟମାନ ହୋଇ] ମନୁଷ୍ୟର ବିପଦ ଅକସ୍ମାତ୍ ଶୂନ୍ୟରୁ ବଜ୍ରାଘାତ ପ୍ରାୟ ପତିତ ହୁଏ ନାହିଁ । ଯେଉଁ ଅଯୋଧ୍ୟା ନୃପତି ଦେବଲୋକ ମର୍ତ୍ତ୍ୟଲୋକରେ ପୂଜ୍ୟହୋଇ ସସାଗର ଧରଣୀର ଚକ୍ରବର୍ତ୍ତୀ ଥିଲେ, କାଲି ସନ୍ଧ୍ୟା ସମୟରେ ଯେଉଁ ରାଜା ମସ୍ତକରେ ରାଜମୁକୁଟ ଧାରଣକରି ସଭାରେ ଇନ୍ଦ୍ର ପ୍ରତାପକୁ ତୁଚ୍ଛକରି ବିରାଜମାନ ହୋଇଥିଲେ—ଆଜି ସେହି ନରପତି ଦୀନ, ହୀନ, ପଥଶ୍ରାନ୍ତ, ଭିକ୍ଷୁ ବେଶଧାରୀ । ଆଜି ମୁଁ ହିଁ ମଧ୍ୟ କଠୋର ହୃଦୟରେ ତାହାଙ୍କୁ ଜଳ ଆଣିବାକୁ ପଠାଇଅଛି । ରେ ହୃଦୟ ! ତୁ ନାରୀ ଦେହରେ ଥାଇ ମହାରାଜାଙ୍କର ଏହି ଦୀନ ଦଶା ଅବଲୋକନ କରି ବିଦୀର୍ଣ୍ଣ ନ ହୋଇ କପରି ରହିଅଛୁ ? ପଥରେ ପଦବ୍ରଜରେ ଚାଲିଲାବେଳେ ରୌଦ୍ରର ଉତ୍ତାପ ମସ୍ତକରେ ସହ୍ୟ କରି କୁମାର ରୋହିତାଶ୍ୱକୁ ଘର୍ମାକ୍ତ କଳେବର ହୋଇ ସ୍କନ୍ଧକୁ ନେଲାବେଳେ ମୋର ଅନୁମାନ ହେଉଥିଲା—ଯେପରି ଆକାଶ ବିକମ୍ପିତ—ଯେପରି ତରୁ ପାଷାଣ ପର୍ଯ୍ୟନ୍ତ ଶୋକରେ ବିହ୍ୱଳ । କିନ୍ତୁ କୋମଳ ନାରୀ ହୃଦୟ କପରି ବିଦୀର୍ଣ୍ଣ ନ ହୋଇ ରହିଅଛି ! ଅଥବା କର୍ମଫଳର ତୀବ୍ର କଷାଘାତ ସହ୍ୟ କରିବା ଲାଗି ବିଧାତାର ଏହି କଠୋର ଦଣ୍ଡ ମୋହର କପାଳରେ ଲିଖିତ ହୋଇଅଛି !

କାଲି ମହାରାଣୀ ହୋଇ ପରମ ସୁଖରେ ସମ୍ମାନିତା ହୋଇଥିଲି । ଆଜି ପଥର କାଙ୍ଗାଳୁଣୀ ହୋଇ ପଦବ୍ରଜରେ ଭ୍ରମଣ କରୁଅଛି । ସେଥି ସକାଶେ ମୋର ଲେଶମାତ୍ର ଖେଦ ନାହିଁ । କିନ୍ତୁ ମହାରାଜାଙ୍କ ଏପରି ହୀନକଷ୍ଟ ସହ୍ୟ ଏବଂ ପ୍ରତିପଦରେ ଅପମାନିତ ଦେଖି ମୋର ହୃଦୟ ମନ୍ଦବହ୍ନିରେ ଉଦ୍ଭବ ହେଲପ୍ରାୟ ଦଗ୍ଧ ହେଉଅଛି—ମୃତ୍ୟୁ ସୁଖ ଦୂରକୁ ଦୂରକୁ ଚାଲି ଯାଉଅଛି ।

[ଜଳ ହସ୍ତରେ ରାଜାଙ୍କର ପ୍ରବେଶ]

ରାଜା—ଦେବି ! ବୃକ୍ଷ ମୂଳରେ ଆହାର ଅଛି । ଜଳ ନିଅ । ରୋହିତାଶ୍ୱକୁ ଆଶ୍ୱାସନା କର । କାଲିରେ ରାଜସୁଖ, ଆଜିରେପଥ କ୍ଳାନ୍ତି, ଅପମାନ, ଦୁଃଖ ଦେଖି ମୁଁ ନିଜ ସକାଶେ ଚକିତ ନୁହେଁ । କିନ୍ତୁ ଯେଉଁ ସୁକୁମାରୀ ନାରୀ ଚରଣରେ ପୁଷ୍ପଶଯ୍ୟା ମଧ୍ୟ କଠିନ ସ୍ପର୍ଶ ବୋଲି ପ୍ରତୀତ ହେଉଥିଲା; ଆଜି ତାହା ଶିଳାକଣ୍ଟକର କଣ୍ଟକାକୀର୍ଣ୍ଣ ଆତପ ତାପିତ ପଥରେ ପୀଡ଼ିତ ହେଉଅଛି । ଯେଉଁ ଅଜ୍ଞାନ ବାଳକ ରୋହିତାଶ୍ୱ ଗତ ରାତ୍ରିରେ, ଶିରୀଷ କୋମଳ ରାଜଭୋଗ୍ୟ ଶଯ୍ୟାରେ ଶୟନ କରିଥିଲା, ଆଜି ତାହାକୁ ପଥମଧ୍ୟରେ ତୃଣ-ଶଯ୍ୟାରେ ଶୟାନ ଦେଖି ମୋର ବଜ୍ରସାର ହୃଦୟ ଦ୍ୱିଧା ହେଉଅଛି ।

ରାଣୀ—ମହାରାଜ ! କର୍ମଫଳ ଆମ୍ଭେମାନେ ଭୋଗ କରୁଥାଉଁ । ଏଥିରେ କାହାରି ଦୋଷ ନାହିଁ । [କିଞ୍ଚିତ୍ ଜଳ ଏବଂ ଖାଦ୍ୟ ଦ୍ୱାରା କୁମାରକୁ ଆଶ୍ୱସ୍ତ କରି] ଆର୍ଯ୍ୟପୁତ୍ର ! ତୁମ୍ଭର କାତରଭାବ ଦେଖି ମୋର ପାଦ ସ୍ତମ୍ଭିତ ହୋଇଅଛି । ତୁମ୍ଭେ ଆଶ୍ୱସ୍ତ ହୁଅ ଏବଂ ଯେଉଁ ସତ୍ୟ ଓ ଧର୍ମ ଆଶ୍ରୟ କରିଥିବାରୁ ତ୍ରିଲୋକରେ ପୂଜ୍ୟ ହୋଇଅଛ । ତାହା ସ୍ମରଣ କରି ଚିତ୍ତବୃତ୍ତି ସ୍ଥିର କର ।

ରାଜା—ପ୍ରିୟେ ! ଯେଉଁ ମଧୁର ବଚନଦ୍ୱାରା ତୁମ୍ଭେ ମୋର ମନଃପ୍ରାଣ ସର୍ବଦା ନିର୍ମଳ ଓ ଚମତ୍କାରହିତ କର, ସେହି ବାକ୍ୟଦ୍ୱାରା ମୁଁ

ପୁନଶ୍ଚ ନୂତନ ପ୍ରାଣଲାଭ କରୁଅଛୁ । କିନ୍ତୁ ତୁମ୍ଭର ଏହି ଅଜ୍ଞାନ ବାଳକଟିର ଏହି ହୃଦୟ ବିଦାରକ କଷ୍ଟ ଦେଖି ମୁଁ ସ୍ଥିର ହୋଇ ପାରୁନାହିଁ ।

କୁମାର—ବାପା ! ରାଜଧାନୀକୁ କେତେବେଳେ ଫେରିଯିବା ?

ରାଣୀ—ବତ୍ସରେ ! ଆଉ ଆମ୍ଭମାନଙ୍କର ରାଜଧାନୀ ନାହିଁ । ସମସ୍ତ ରାଜ୍ୟ ବିଶ୍ୱାମିତ୍ରଙ୍କୁ ଦାନ କରି ଦିଆ ହୋଇଅଛି । ଆଉ ସେ ସୁଖ ମନକୁ ଆଣିବୁ ନାହିଁ । ତୁମ୍ଭର ପିତା ମାତା ଯେପରି କଷ୍ଟରେ ଅଛନ୍ତି, ସେହିପରି କଷ୍ଟରେ ରହିବାକୁ ଶିକ୍ଷା କରିବୁ ।

ରାଜା—ଦେବୀ ! ତୁମେ ମୋ ସହିତରେ ଚିରକାଳ କଷ୍ଟରେ ଜୀବନ ଯାପନ କରିବ ?

ରାଣୀ—ନିଶ୍ଚୟ କରିବ ! ଏହି ନିଦାରୁଣ ପ୍ରଶ୍ନଦ୍ୱାରା ମୋର ଦୁଃଖ ସନ୍ତାପ ଦୁଇଗୁଣ ବଢ଼ି ଉଠୁଛି ।

ରାଜା—ପଥଶ୍ରମ ଦଗ୍ଧ ପ୍ରାଣ ଶୁଷ୍କ ତାଲୁ ଯଥା
ବସନ୍ତ ପରଶ ସୁଖ ଇଚ୍ଛଇ ନିୟତ ।
ତୃଷାତୁର ସୁରଧୁନୀ ସୁଶୀତଳ ବାରି
କୁସୁମିତ କୁଞ୍ଜ ଛାୟା ବାଞ୍ଛଇ ଯେସନ,
ସେହିପରି ଅର୍ଦ୍ଧାଙ୍ଗିନୀ ଇଚ୍ଛଇ ସର୍ବଦା ।
ତବ ସଙ୍ଗ, ତବ ମୁଖ ଅମୃତ ବଚନ,
କିନ୍ତୁ ପ୍ରିୟେ ! ଦେଖି ତବ ଶରୀର କମ୍ପଣ
କ୍ଷୁଧା ତୃଷା ପରି ଶୁଷ୍କ ପଙ୍କଜ ବଦନ ।
ସନ୍ତାପ ବାରିଧି ବେଗ ଦ୍ୱିଗୁଣ ବଢ଼ିବ,
ଶଶୀକଳା ନିତ୍ୟକ୍ଷୟ ଦେଖି ଏ ନୟନେ ।
ପ୍ରତିକ୍ଷଣ ହୃଦତନ୍ତ୍ରୀ ବ୍ୟଥିତ ହୋଇବ ।

ରାଣୀ—ମନ୍ଦାକିନୀ-ସୁଧା [illegible] ପ୍ରାନ୍ତେ
ଲଗ୍ନ ଛିବ ହଟନ ସନ୍ତ୍ର ପରାଣେ ।
ଯାହାର ନୟନ ଜ୍ୟୋତ୍ସ୍ନା ମଞ୍ଜିମନ୍ତ ଦର୍ପ
ଚିତ୍ତ ବୃତ୍ତି ସ୍ଥିର ଲକ୍ଷ୍ୟ, ହୃଦସ୍ଥ ସର୍ବସ୍ୱ
ଦୀନ ଦଶାପନ୍ନ ସେହି ପ୍ରିୟ ପ୍ରାଣ ପତି ।
ପଥର କାଙ୍ଗାଳ ଦେଖି କି ସୁଖରେ ଆଉ
ପଙ୍କଜ ବଦନ ମୋର ପ୍ରଫୁଲ୍ଲ ହୋଇବ ?
ହୃଦନାଥ ହୃଦ ହାର ଆଦର ବଚନ,
ଶୁଣିଛୁ ଯେ ଅହର୍ନିଶ ଜାଗ୍ରତେ ସ୍ୱପନେ ।
ସମ୍ପଦରେ ସଖାଥାଇ ବିପଦେ କପଣ
ତେଜିବ ସେ ସୁଖଶାନ୍ତ-ରୂପଧାର କାନ୍ତ ?
ଆର୍ଯ୍ୟପୁତ୍ର ! ରାଜ୍ୟ ଅଟ୍ଟାଳିକା ଶ୍ରେଣୀ
ହେମ ଆଭରଣ ରତ୍ନ ସିଂହାସନ ଯହ
ମଣିଥାନ୍ତ ଯବେ ତୁମ୍ଭବିନା ସୁଖପ୍ରଦ
ରତନ ପଲଙ୍କ ପୁଷ୍ପ ପ୍ରମୋଦ ଉଦ୍ୟାନ
କୁଙ୍କୁମ, ଚନ୍ଦନ, ଚନ୍ଦ୍ର, ଚାମର ବ୍ୟଜନ,
ରାଜସୁଖ, ମଣି, ରତ୍ନ ଜାଣିଥାନ୍ତ ଯହ,
ତୁମ୍ଭବିନା ଦୁଃଖକର ଆଜ ଏ ବିପଦେ
ପଥଶ୍ରାନ୍ତ ଗ୍ରୀଷ୍ମତାପ ପୀଡ଼ିତା ପରାଣେ ?
କୁସୁମିତ କୁଞ୍ଜଲତା ଗ୍ରସ୍ତାର ସଦୃଶ
ସୁରଧୁନୀ ସମ ମୂର୍ତ୍ତି ଭାଗ୍ୟବତୀ ଯହ ।
ତରୁବର ତୃଷାତୁର ପରିଚର୍ଯ୍ୟା ସୁଖୁଁ
ବଞ୍ଚିତ ହେବ କପଣ ! ନୟନ ସୁନ୍ଦର
ବୋଲି କହୁଥାଅ ଯାକୁ କି ଶୋଭା ନୟନେ,
ନୟନ ଚନ୍ଦ୍ରମା ଯହ ନ ଦେଖିବ କେତେ ?

ସତ୍ୟ ଧର୍ମନିଷ୍ଠ ବୋଲି, ଯେଉଁ ନୃପଶ୍ରେଷ୍ଠ
ମର୍ତ୍ତ୍ୟଲୋକେ, ସ୍ୱର୍ଗଲୋକେ ତାହାର ଗୌରବ
ଅକ୍ଷୟ ଭୂଷଣ ମୋର ଅମୂଲ୍ୟ କାଞ୍ଚନ ।
ଶ୍ରୀମନ୍ତ ସେହି ନୃପ ଥାଉଁ ମୋର ପାଶେ
ପ୍ରୟୋଜନ ନାହିଁ ରାଜ୍ୟେ, ରତନେ, କାଞ୍ଚନେ
ତୋଷିବାକୁ ପ୍ରିୟଜନେ ଥାଏ ଯଦି ଇଚ୍ଛା
ଦେଖି ତବ ଅପମାନ ପଥଶ୍ରାନ୍ତି, କ୍ଲେଶ
ଜୀବନ୍ମୃତ ଯେହୁ, ତେଜିବ କି ସେ ଦାସୀକୁ ?
ତବ ସେବା, ତବ ସଙ୍ଗ ସଞ୍ଜୀବନୀ ସମ,
ପରିଦଗ୍ଧ ହୃଦେ ମୋର ସୁଖଦ ଅଟଇ
ଦେଖିଲେ ବଦନେ ତବ ବିଷାଦର ରେଖା
ସହସ୍ର ମରଣ ପୀଡ଼ା ପରାଣ ଶୋଷଇ ।

ରୋହିତାଶ୍ୱ—[ନିକଟକୁ ଆସି କର ଧାରଣ ପୂର୍ବକ] ମା ! ମା ! ସବୁ ଖାଇ ସାରିଲିଣି । ଏବେ ଯିବା ଚାଲ ।

ରାଜା—ଦେବି ! ଶୀଘ୍ର ଆମ୍ଭେମାନେ ଆହାରାଦି ସମାପ୍ତ କରିବା ।

ରାଣୀ—[ଆହାର ଦେଖି] ମହାରାଜ ! ଯେଉଁ ହସ୍ତରେ ଅମୃତ ତୁଲ୍ୟ ଆହାର ପରିବେଷଣ କରିଅଛୁ, ସେ ହସ୍ତରେ ଏହି ଆହାର ଦେବାକୁ ଇଚ୍ଛା ହେଉନାହିଁ । ଆପଣ ସ୍ୱୟଂ ନିଅନ୍ତୁ ।

ରାଜା—[ରୋହିତାଶ୍ୱକୁ ଧରି] କି ଖାଦ୍ୟ ଖାଇଥିବ—ପେଟ ପୁରିଛି କି ନାହିଁ କିଏ ଜାଣେ-ବାପା ! ଆଉ କିଛି ଖାଇବୁ କି ?

ରୋହିତାଶ୍ୱ—ନା, ଆଉ କିଛି ଖାଇବି ନାହିଁ । ପେଟ ପୁରେଇ ପାଣି ପିଇଛି ।

ରାଣୀ—ମହାରାଜ ! ଶୀଘ୍ର ଶୀଘ୍ର ଆହାର କରନ୍ତୁ, ମୋର କ୍ଷୁଧା ନାହିଁ । ପଥଶେଷରେ ରାଜ କାଲକୁ ଭୋଜନ କରିବ ।

ରାଜା—ମୁଁ ମଧ୍ୟ ଖାଇବ ନାହିଁ । କ୍ଷୁଧା ହେଲେ ପରେ ଖାଇବି । ପଥ ଶ୍ରମରେ ସାଧାରଣତଃ କ୍ଷୁଧା ହୁଏ । କିନ୍ତୁ କ କାରଣରୁ କ୍ଷୁଧା ନାହିଁ । ବୁଝି ପାରୁନାହିଁ । [ରାଜା ଚନ୍ଦ୍ରାନ୍ତ ହୋଇ ଭ୍ରମଣ କରୁଥିବା ସମୟରେ ରାଣୀଙ୍କର ସ୍ୱହସ୍ତରେ ଆହାର ବନ୍ଧନ] [ଭ୍ରମଣ କରୁ କରୁ] ଆପଦର ସୀମା ଶେଷ ହୋଇନାହିଁ ଦକ୍ଷିଣା ଦାନ ଦେଇ ସାରିଲେ ଜାଣିବି ମସ୍ତକରୁ ପର୍ବତ ଭାର ଖସି ପଡ଼ିବ ।

[ରାଣୀଙ୍କ କାନରେ ଆହାର ବନ୍ଧନ ଦେଖି ଦୁଃଖରେ ଚମକିଲା ପ୍ରାୟେ]—

ଏ କ ଦୃଶ୍ୟ ସମ୍ମୁଖରେ ଦେଖୁଛୁ ନୟନେ
ଅଯୋଧ୍ୟା କୁଳମଣ୍ଡନା ରାଜଲକ୍ଷ୍ମୀ ରାଣୀ
ସ୍ୱହସ୍ତେ ବନ୍ଧିବେ ଖାନ ପଶୁଯୋଗ୍ୟ ଖାଦ୍ୟ ।
ଭୀଷଣ ସଂଗ୍ରାମ ଅଗ୍ନି ଖଡ଼୍ଗଧାର ମଧ୍ୟେ
ପ୍ରବେଶି ଯୁଝିଛୁ ଦର୍ପେ ଅକମ୍ପ ହୃଦୟେ,
ସ୍ଥିର ଚକ୍ଷେ ସସାଗର ପୃଥିବୀ ତେଜିଲି;
କିନ୍ତୁ ଏ ଦାରୁଣ ଦୁଃଖ ଦର୍ଶନେ ହୃଦୟ
ବଜ୍ରସାର ହୋଇ ସୁଦ୍ଧା ବିଦୀର୍ଣ୍ଣ ହୋଇଲା ?
ନରାଧମ କ୍ଷେତ୍ରକୁଳ କୁଳାଙ୍ଗାର ମୁହିଁ
ଚଣ୍ଡାଳ ଅଧମ, ଧର୍ମପ୍ରାଣ ଦୈବତ୍ୟକ୍ତ
ହତଭାଗ୍ୟ ରାଜା! ସୂର୍ଯ୍ୟବଂଶେ ଜାତ
ଖଦ୍ୟୋତ ହୋଇଣ; ଦେବ ! ଫିଙ୍ଗି ଦିଅ ଖାଦ୍ୟ
ବିଦୀର୍ଣ୍ଣ ହୃଦୟେ ବଭୁକ୍ଷିତ ନୁହେଁ ମୁହିଁ,
ହା ! ବିଧି ନୃଶଂସ ରୁଦ୍ର ପିଶାଚ ସଦୃଶ,
କ୍ରୂର ଭାବେ ରାଜ୍ୟ ସୁଖ ପୀୟୂଷ ସମାନ
ଭୁଞ୍ଜାଇଲୁ କ୍ଷଣେମାତ୍ର, ପୁଣି ମୁହୂର୍ତ୍ତିକେ
ଦୀନବାସ ପିନ୍ଧାଇଲୁ ମୋତେ ମୁଖୁ ଅସ୍ତ

ଜାଣି, ଜାୟା ସୁତ ଅପମାନ ଶତକୋଟି ମୃତ୍ୟୁ
ପ୍ରତ୍ୟହ ମାରଣେ କିବା ପେଷିଛୁ ମୋ ପ୍ରାଣେ .

ରାଣୀ—ଧୈର୍ଯ୍ୟଧର ମହାରାଜ ! ବିପଦେ ସମ୍ପଦେ
ନିତ୍ୟ ସହଚରୀ ଦାସୀ ପ୍ରାଣସଖା ମୁହିଁ ।

ରାଜା—ଷଣ୍ଡିଧୁ କ୍ରମର ହୋଇ ଅବଳା କପଣ,
ବିପ୍ରପୀଡା, ଦୀନଦୁଃଖୀ ଦୁର୍ଗଜନ କ୍ଲେଶ,
ଦେଖିନାହିଁ କେବେ, ବୀରବଳେ କାପୁରୁଷେ
ପରିଚର୍ଯ୍ୟା କରି ଶୂଦ୍ର ବୋଲି ପୂଜ୍ୟ ଥିଲି ।
ଅତଏବ ଦିଅ ମୋତେ ପାତ୍ର ସହ ଖାଦ୍ୟ,
ବହିବି ଅକ୍ଲେଶେ ତାହା କୁମର ସହିତେ ।

[ରାଣୀଙ୍କଠାରୁ ଖାଦ୍ୟଭାର ସ୍କନ୍ଧରେ ଧାରଣ, ମାଙ୍ଗଳି ପ୍ରବେଶ]

ମାଙ୍ଗଳି—ହରିଶ୍ଚନ୍ଦ୍ର ! କି ବେକୁବ୍—କି ବେକୁବ୍ ! ଏପରି ରୌଦ୍ର ପରିଶୋଭିତ କ୍ଷୁଦ୍ର ଜଳାଶୟର ଉଷ୍ଣୋଦକ ରୁଚି ଆଉ କେଉଁଠାରେ ଭୋଜନ କରିବୁ ? କିଛି ଚିନ୍ତା ନାହିଁ । ମୁଁ ରଥରେ ସମ୍ୟକ୍‌ରୂପେ ଆରୋହଣ କରି ପଥରେ ବିଶ୍ରାମ କରି ଗମନ କରିବି, ଆହାର ଗୁରୁତର ହୋଇଅଛି । ତୁମ୍ଭେମାନେ ଶୀଘ୍ର ଶୀଘ୍ର ପଛରେ ଆସ, ସାବଧାନ ! ସାବଧାନ ! [ପ୍ରସ୍ଥାନ]

ପଟକ୍ଷେପଣ



# ଚତୁର୍ଥ ଦୃଶ୍ୟ

## [ଫଳ ଉଦ୍ୟାନ]

[କୃଷକ ଶଙ୍କରୁ ଓ ଦୀନ ବେଶରେ ପ୍ରଥମ ମନ୍ତ୍ରୀଙ୍କର ପ୍ରବେଶ]

ପ୍ରଥମମନ୍ତ୍ରୀ—ଶୁଣିଥିଲି ତୁମ ବଗିଚାରେ କେତେ ନୂଆଲୋକ କାମ କରୁଛନ୍ତି ।

ଶଙ୍କରୁ—ମୁଁ କୁଆଡ଼ୁ ବଗିଚା ପାଇବିରେ ବାପ ! ଏ ବଗିଚା ମୋ ମୁନିବର ! ବାପରେ ! ତୁ କାହାକୁ ଖୋଜୁଛୁ ?

ପ୍ରଥମ ମନ୍ତ୍ରୀ—ତୋ ମୁନିବ ନାଁ କ'ଣ ?

ଶଙ୍କରୁ—କାହିଁକି ପଚାରୁଛୁ; ତା'ଠି କାମ ଅଛି କି ?

[କୋଦାଳରେ ମୃତ୍ତିକା ଖନନ]

ପ୍ରଥମ ମନ୍ତ୍ରୀ—ନା, କିଛି କାମ ନାହିଁ । କ'ଣ କରିବି, ମୂଲ ମଜୁରି ନ ଲାଗିଲେ ପେଟ ପୋଷିବି କୁଆଡ଼ୁ ? ମୂଲ ଖୋଜୁଥିଲି ।

ସ୍ୱଗତ—ଦକ୍ଷିଣା ଦାୟରୁ ମୁକ୍ତ ହୋଇଲେ ନୃପତି
ନାନା ଉପାୟରେ ସୁଖେ ବଞ୍ଚାଇବି ତାଙ୍କୁ
ସପାଗରା ଧରା ଯାର କର କବଳିତ ହୋଇ
ସୁଶାସିତ ଥିଲା, ଧର୍ମ ବୈଜୟନ୍ତୀ ଯାର
ସ୍ୱରଗେ ଉଡ୍ଡୀନ ସେହି ମହାରାଜ କଷ୍ଟେ
ସୁଖରେ ରହିବେ, ଆଲୋକ ଦର୍ଶନ ସୁଖେ
ସଂଯୁକ୍ତ କରାଇ, ଦବାକରେ ତେଜୋଗୁଣ
ଚନ୍ଦନେ ସୁଗନ୍ଧ, ପୀୟୁଷରେ ଅନାମୟ,

ସ୍ୱୟଂସିଦ୍ଧ ଚିର ବର୍ତ୍ତିମାନ, କି ଜୀବନରେ
ଧର୍ମରାଜ ଦୃଷ୍ଟ ଡର ଦଣ୍ଡ, ଭୋଗିବେ କାତରେ ?
ଅତ୍ୟାଗ୍ରହୀ କୂଟବୁଦ୍ଧି ବିଶ୍ୱାମିତ୍ର ମୂଢ଼,
ଭୁଞ୍ଜିବେ ସାମ୍ରାଜ୍ୟ ସୁଖ, ବୃଥା ଏ ସ୍ୱପନ ।
ବିପ୍ଲବ-ଅନଳ ଶିଖା ଅନ୍ତକ ପରାୟେ
ଉଠିବ ଆକାଶ ଭେଦ; ଅଚିରେ ତପସ୍ୱୀ
ଫଳ, ମୂଳ, ତପୋବନ, ଅଜିନ ହୋମାଗ୍ନି
ରାଜ୍ୟ ବିନିମୟେ ନେବେ; କିନ୍ତୁ ଉପସ୍ଥିତ
କାର୍ଯ୍ୟ ଗୁରୁତର କଷ୍ଟସାଧ୍ୟ ଅସମ୍ଭବ ପ୍ରାୟେ
ଏକମାସେ ସପ୍ତକୋଟି ସୁବର୍ଣ୍ଣ ଦକ୍ଷିଣା,
ସଗର୍ବେ ସଙ୍କଳ୍ପ ଥିଲ; କିନ୍ତୁ ବୃଥା ଆଶା ।

[ଏକଦିଗରୁ ରାଜା କୋଦାଳ ହସ୍ତରେ ପୁନଃ ପ୍ରବେଶ]

ରାଜା—[ମନ୍ତ୍ରୀଙ୍କୁ ଚାହିଁ] ଅମାତ୍ୟବର ! ଅସମୟରେ ତୁମ୍ଭଙ୍କୁ ଏହି ସ୍ଥାନରେ ଦେଖୁଛୁ କାହିଁକି ?

ପ୍ରଥମ ମନ୍ତ୍ରୀ—ପ୍ରଭୋ ! ଏକାନ୍ତରେ କହିବ । [କୃଷକ ସମୀପରୁ ଅନ୍ତର ହୋଇ] କାର୍ଯ୍ୟ ତ୍ୟାଗ କଲାଦିନରୁ ମୁଁ ଏକ ମୁହୂର୍ତ୍ତ ବିଶ୍ରାମ କରିନାହିଁ । ସପ୍ତକୋଟି ସୁବର୍ଣ୍ଣ ମୁଦ୍ରା ଦକ୍ଷିଣା କୌଣସି କୌଶଳରେ ଆଦାୟ କରି ମହାରାଜାଙ୍କ ଭବିଷ୍ୟତ ସୁଖ ବିଧାନପାଇଁ ଗୃହରୁ ବହିର୍ଗତ ହୋଇଅଛୁ । ମହାରାଜା ଏହି ସ୍ଥାନରେ ଥିବେ ଜାଣି ମହାରାଣୀଙ୍କୁ ଏବଂ ଯୁବରାଜଙ୍କୁ ସାକ୍ଷାତ କରିବା ସକାଶେ ଆସିଅଛୁ ।

ରାଜା—ବିପଦ ସମୟରେ ଭୃତ୍ୟମାନଙ୍କର ସେବା ଏବଂ ଏହିପରି ରାଜଭକ୍ତି ପ୍ରଶଂସାର୍ହ; କିନ୍ତୁ ବୃଥାଚେଷ୍ଟା । ମୁଁ ଅନେକ ଭାବିଲିଣି । କୌଣସି ଉପାୟରେ ଦକ୍ଷିଣା ଦେଇପାରିବ ନାହିଁ । ଦାନଟି ଅସମ୍ପୂର୍ଣ୍ଣ ରହିଯିବ, ଆଶଙ୍କା ହେଉଛି । ଏ ବିଷୟରେ ଏକମାତ୍ର ସହାୟ ଭଗବାନ ହରି ଅଟନ୍ତି—ସେ ହିଁ ସୁବୁଦ୍ଧିଦାତା ।

[ରାଣୀ ଓ ରୋହିତାଶ୍ୱର ପ୍ରବେଶ]

ପ୍ରଥମ ମନ୍ତ୍ରୀ—[ପ୍ରଣମାନ୍ତର] ମହାରାଜ୍ଞି ! ବିପଦ କାଳରେ ଏହି ଭୃତ୍ୟ ଦକ୍ଷିଣା ବିଷୟରେ ଯଦି କୌଣସି ଉପାୟରେ ସାହାଯ୍ୟ କରିପାରେ, ପ୍ରସ୍ତୁତ ଅଛୁ ।

ରାଣୀ—ତୁମ୍ଭେ ନିର୍ବିଘ୍ନରେ ସ୍ୱଦେଶକୁ ଫେରିଯାଅ । ଆମ୍ଭେମାନେ କେବଳ ଈଶ୍ୱରଙ୍କ ବ୍ୟତୀତ ଅନ୍ୟ କୌଣସି ଉପାୟ ଦେଖୁନାହୁଁ ।

ରାଜା—ମନ୍ତ୍ରିବର ! ତୁମ୍ଭେ କି ଉପାୟ ଚିନ୍ତା କରିଅଛ ?

ପ୍ରଥମ ମନ୍ତ୍ରୀ—ଏକମାସ ମଧ୍ୟରେ ମୁଁ ଧନାଢ୍ୟ ପ୍ରଜାମାନଙ୍କଠାରୁ ସପ୍ତକୋଟି ସୁବର୍ଣ୍ଣ ଆଦାୟ କରିପାରିବି । ମହାରାଜଙ୍କୁ ଈଦୃଶ ବିପନ୍ନ ଦେଖି କେଉଁବ୍ୟକ୍ତି ମୁକ୍ତହୃଦୟରେ ଅର୍ଥ ସାହାଯ୍ୟ କରିବାକୁ କୁଣ୍ଠିତ ହେବ ?

ରାଜା—ନା; ମୁଁ କଦାପି ସେହି ଅର୍ଥ ଗ୍ରହଣ କରିପାରିବି ନାହିଁ ।

ରାଣୀ—ଋଣସ୍ୱରୂପ ସେହିଅର୍ଥ ଗ୍ରହଣ କରାଯାଇ ପାରେ; କିନ୍ତୁ ଋଣଦାୟ ଶୁଝିବାକୁ ବଳ ନାହିଁ । ଅତଏବ ବୃଥା ଆଶା ।

ପ୍ରଥମ ମନ୍ତ୍ରୀ—ମହାରାଜ ! ଷଡ଼ଯନ୍ତ୍ରରେ ରାଜ୍ୟ ଅପହରଣ କଲାପ୍ରାୟ ବିଶ୍ୱାମିତ୍ର ମହର୍ଷି ଆପଣଙ୍କୁ ପ୍ରଥମେ ପ୍ରତିଜ୍ଞାବଦ୍ଧ କରାଇ, ଅନ୍ୟାୟ ପ୍ରାର୍ଥନା କରି ରାଜ୍ୟ ଗ୍ରହଣ କରିଅଛନ୍ତି । ମୋର ସମ୍ପୂର୍ଣ୍ଣ ବିଶ୍ୱାସ, ତପସ୍ୱୀ ହସ୍ତରେ ରାଜ୍ୟ ବେଶିଦିନ ରହିପାରିବ ନାହିଁ ।

ରାଜା—କିନ୍ତୁ ଦାତା ଦାନ କଲାପରେ ଦାନଗ୍ରହୀତାଙ୍କର ଦୋଷ ଆଲୋଚନା କରିବା ଉଚିତ ନୁହେଁ ।

ରାଣୀ—ଦୂର,ଅନିଶ୍ଚିତ ଆଶାରେ ନିର୍ଭରକରିବା ଉଚିତ ନୁହେଁ ।

ପ୍ରଥମ ମନ୍ତ୍ରୀ—ସେ ଦାୟିତ୍ୱ ମୋ ଉପରେ ନ୍ୟସ୍ତ । ଘୋର ବିପତ୍କାଳରେ ଏତେ ସୂକ୍ଷ୍ମ ଭାବରେ ଭବିଷ୍ୟତ ପ୍ରତି ଦୃଷ୍ଟି ରଖିବା ଅନୁଚିତ ।

[ମାଙ୍ଗଳୀର ପ୍ରବେଶ ଏବଂ ନତ୍ର ହୋଇ]

ମାଙ୍ଗଳୀ—ହରିଶ୍ଚନ୍ଦ୍ର ! ଏତେ ବିଳମ୍ବରେ କାର୍ଯ୍ୟ ଆରମ୍ଭକଲେ କଣ ଭଲ ହେବନାହିଁ ? ମୁଁ ଘଡ଼ିଏ ହେଲା କୋଦାଳଦେଇ ପଠାଇଲି; ଏଠି ବସି ଗପ ହେଉଛ ଏଇଟା କଏରେ ! ଆରେ ତୁ କିଏରେ ?

ପ୍ରଥମ ମନ୍ତ୍ରୀ—[ପ୍ରଣାମ] ମୋତେ ଆପଣ ପୂର୍ବେ କେବେ ଦେଖିନାହାନ୍ତି ।

ମାଙ୍ଗଳୀ—ଓହୋ ! ଓହୋ ! ଚହ୍ନିଲି ! ତୋର ଏତେଦିନ ଯାଏ ଫାଶୀ ହୋଇନାହିଁ କାହିଁକି ?

ପ୍ରଥମ ମନ୍ତ୍ରୀ—ମହାଶୟ ! ମହାରାଜାଙ୍କ ପରିବର୍ତ୍ତିରେ ମୁଁ ପରିଶ୍ରମ କରିବି । ଉଦ୍ୟାନରେ ମହାରାଜ ଯେଉଁ ସବୁ କାର୍ଯ୍ୟ କରନ୍ତେ, ତାହା ମୁଁ କରିବ ।

ମାଙ୍ଗଳୀ—[ରୋଷରେ] ଚୁପ୍ ! ଚୁପ୍ ! ଏ ଆସିଛୁ ମହାରାଜାଙ୍କ ଲାଗି ଦକ୍ଷିଣା ଦେବ । ମହାରାଜାଙ୍କ ସଙ୍ଗରେ ଯଦି କାର୍ଯ୍ୟ କରିବୁ, ତା ହେଲେ ଆପତ୍ତି ନାହିଁ ।

ରାଣୀ—ମହାଶୟ ! [ରୋଦନ କରି] ମହାଶୟ ! ଆପଣଙ୍କର ମହାରାଜ କି କ୍ଷତି କଲେ ଯେ ଆପଣ ତାହାଙ୍କୁ ଅପମାନିତ କରୁଅଛନ୍ତି !

ମାଙ୍ଗଳୀ—କି କ୍ଷତି କଲେ ?

ରୋହିତାଶ୍ୱ—ତୁ କାହିଁକି ବାପାଙ୍କୁ ଏଭଳି କହୁଛୁ ? [କ୍ରୁଦ୍ଧ ପ୍ରାୟ ହୋଇ ଖଣ୍ଡିଏ ଗୋଟ ଧରି ମାରିବାକୁ ଉଦ୍ୟତ, ରାଣୀ ହସ୍ତ ଧରିବାରୁ ବିରତ]

ମାଙ୍ଗଳୀ—ବାପରେ ! ଏ ତ ସତେ ଗୋଖର ଛୁଆ ! ଫଁ ନ ହେଲେ ଗୁରୁତ୍ୱ ନାହିଁ ।

ରାଜା—ମହାଶୟ ! ଆପଣ ଯାହା ଆଦେଶ କରିଅଛନ୍ତି, ସେ ସମସ୍ତ କାର୍ଯ୍ୟ ହେବ, ଅଜ୍ଞାନ ବାଳକର ଅପରାଧ କ୍ଷମା କରନ୍ତୁ । [ପ୍ରସ୍ଥାନ]

[ଶୋଭାର ପ୍ରବେଶ]

ଶୋଭା—ବାପରେ ! ସେ ତ ଦୁଷ୍ଟଲୋକ—ଆସ କାମ କର ବସ । ମୁଁ ଥକ୍କା ହେଲିଣି, ଟିକିଏ ବସେ । ବଡ଼ଲୋକର ପୁଅ ପୁଣି ଦିଶୁଛ, ତମେ ସବୁ କିଏ ? [ରାଣୀଙ୍କ ମୁଖରେ ବସ୍ତ୍ର ଦେଖି] କାନ୍ଦନା ଲୋ ମା'ରୁ କାହିଁକି ଦୁଃଖ କରୁଛୁ—ଏ ଛୁଆଟିକି ଦେଖିଲେ ତ ପାଇକ ଘର ଛୁଆ ପରି ଦିଶୁଛୁ । ସେ କ'ଣ କାମ କରିପାରିବ ?

[ପଟ୍ଟକ୍ଷେପଣ]

— x —

# ଚତୁର୍ଥ ଅଙ୍କ

## ପ୍ରଥମ ଦୃଶ୍ୟ

## [କୃଷକ କୁଟୀର]

[ଶଙ୍କରୁ ଓ ତାର ମା ଶୋଖିର ପ୍ରବେଶ]

ଶୋଖି— ବାପରେ ! ବଡ଼ଲୋକର ପୁଅ ନାତି ହୋଇ ନ ଥିଲେ ସେ ସବୁ ଏଡ଼େ ସୁନ୍ଦର ହୋଇଥାନ୍ତେ ନା ?

ଶଙ୍କରୁ—[ପିଙ୍କା ଖାଉ ଖାଉ] କହନା ଲୋ ବୋଉ ! ତାଙ୍କୁ ଦେଖିଲେ ମୋର କୋରଧ ହୁଏ । ମୁନଦଣ୍ଟା ତ ପିଶାଚ, ମୁଠାଏ ଭଲକରି ଖାଇବାକୁ ଦେଉନାହିଁ ।

ଶୋଖି— ପଇସା କଉଡ଼ି ଦଏନା ?

ଶଙ୍କରୁ— କେ ଜାଣେ, ମୁଁ ଜାଣେ ନାହିଁ, ସେ କଏ କୁଆଡ଼ୁ ଆସିଚନ୍ତି, ମୁଁ ଜାଣେ ନାହିଁ । ପଇସା ଦଉଥିବ, ନ ଦବ କାହିଁକି ?

ଶୋଖି—[ପଣବା ବନେଇବାକୁ ବସି] ହଁରେ ବାପ, କପାଳକଥା । କଏ କହିଲା ପୁଣି ଟଣୀହୋଇ ବସିଥାନ୍ତି । ପାଞ୍ଚ ପାଞ୍ଚଟା ପୁଅ ମଲେ । ଯମ ତ ସହିଲା ନାହିଁ । ପାଞ୍ଚପୁଅ, ପାଞ୍ଚବୋହୂ ଥାନ୍ତେ—ମୁଁ କଣ ବୁଢ଼ୀହୋଇ ଏହିପରି ଏ ଅଖି ଲୁହ ସେ ଅଖିରେ ପୋଛି କାମ କରୁଥାନ୍ତି ।

ଶଙ୍କରୁ— ବୁଝିଲୁ ନା ବୋଉ; ହେଇ ମର୍ଦ୍ଦଣ୍ଟା କାଲି ମୋ ପ୍ରାଣ ବାହାରେଇ ଦେଲା । ଦଶଘଡ଼ି ଦିନ ହେଲାକି, ପୁଞ୍ଜୁଣି ଘାଟରେ ବସିଥିଲି, ବାତ

ଘୁଷି ଦେଲା—ଗଡ଼ିତ ପଡ଼ିଲି । ଏକାମତେ କି ବୁଦ୍ଧି ଦିଶିଲା— "ମରିଗଲି ହୋ" "ମରିଗଲି ହୋ" ହୁରି ପକାଇଲି । ଇମିତି ବଡ଼ ଲୋକଗୁଡ଼ାକ,କେହି ଭଲ ଆସନ୍ତେ । ସେହି ହରିଶ୍ଚନ୍ଦ୍ର ଦୌଡ଼ି ଆସି ପୁଖୁରୀରେ ପଶିଲା । ମୁଁ ତଳ ଧରି ଯାଇଥିଲି. ବହୁତ କଷ୍ଟରେ ମୋତେ ଉଠେଇ, ଚେତା ଦେଇ ଘରକୁ ଗଲା ।

ଶୋଖି—ମୋ ଘର ତ ବୁଡ଼ିଯାଇ ଥିଲା ରେ ! ତୋର ତ ଏ ବାର ସାତ ବରଷ ହେଲା ଛୁଡ଼ିଲାନାହିଁ । କେତେ ଗୁଣିଆଁ ବଇଦ ଗଲେଣି— ଏବେ ମୁଁ କରିବି କ'ଣରେ ବାପ ! ଗୋଟିଏ ବୋଲି ଆଖି । ସେ ଆଖିଟି ଗଲେ ମୁଁ ଆଉ ବଞ୍ଚିବି ନାହିଁ । ଦଶାବଥା ଜୀବନଟା ଯାଉ ନାହିଁ, ଆଖି ଆଗରେ ପାଞ୍ଚପୁଅ ମଲେ, ସବୁ ଦେଖିଲି, ତେବେ ଲୁଚ୍ଚା ପ୍ରାଣ ଛୁଟିଯାଉନାହିଁ ।

ଶଙ୍କରୁ—ହରିଶ୍ଚନ୍ଦ୍ର ପହିଲୁ ପହିଲୁ କାମ ଜାଣିଥିଲା କି ? ମୁଁଇ ତାକୁ ସବୁ କାମ ଶିଖେଇଛି ।

ଶୋଖି—କୋଟି ଆଇଷ ହେଉରେ ବାପ, ପୁଅ ମାଇପ ଦିହେଁ ଘର କରୁ, ସେ ତ ମୋ ପ୍ରାଣ ବଞ୍ଚେଇଛି । ତୁ ତା ଲାଗି ଘଡ଼ିଏ ଘଡ଼ିଏ କାମ କରିଦେବୁ ।

ଶଙ୍କରୁ—ମ-ମ-ବୁଝି ନାହୁଁ କି ? ସେ ଓଲଟା ବୁଝିବ, ସେ ନିଜେ ସବୁ କାମ କରିବ-ପୁଅଟି ତ'ର କାମ କରିବ, କହିବ-ଆଉ, ମୁଁ କାହାରି ଧାରୁଆ ହେବିନାହିଁ ।

ଶୋଖି—ମୁଁ ମରିଯାଏ; ଆହା ! କେଡ଼େ ସୁନ୍ଦର ପୁଅଟିଏ ପାଇଛୁ । ବାପରେ ! ତା ପରି ଲୋକ ମିଳିବେନାହିଁ । ଶାଗ କେରିଏ, ମଞ୍ଜା ଖଣ୍ଡିଏ ତାକୁ ଦେଇ ଆସିବୁ । କ'ଣ ଖାଉଥିବ କିଏ ଜାଣେ ? ତୁଚ୍ଛା ଖାଉଥିବ-ତା ମାଇପକୁ କହିବୁ, ମଞ୍ଜା ଦେଇ ସୁଜୁନା ଶାଗ ଖରଡ଼ିବ-ଆଚ୍ଛା ଲାଗିବ ।

ଶଙ୍କରୁ—ମ-ମ ! ଅଛା କଥା ତ ମନରେ ପଡ଼ିଲା ! ମୁଁ ଯାଉଛି ଲୋ ବୋଉ, ଆଗେ ବଗିଚା ଦେଖି ଆସେ, ଖାଇବ ।

ଶୋଭା—କ ଲୋ ବାପ ! ଶୁଣ ଟିକଏ ବସେଇ ଦେଲେ ଉଚ୍ଛୁଣି ହବ, ଉଚ୍ଛୁଣି ଆଇଲୁ, ଫେର୍ ଯିବୁ ।

ଶଙ୍କରୁ—ନା'ଲୋ ବୋଉ, ମୁଁ ଯାଉଛି ଆଗେ ବଗିଚା ଦେଖି ଆସେ । ହରିଶ୍ଚନ୍ଦ୍ର ଆଉ ତାର ପୁଅ କାମ କରୁଛନ୍ତି କ ନାହିଁ ଦେଖି ଆସିବ ।

ଶୋଭା—କ ? ଅଜକ ମାସେ ହେଲା ଦବୃଦନେ ତ କାମ କରୁଚନ, ଅଜ କହିକ ଆସିବେ ନାହିଁ ?

ଶଙ୍କରୁ— ନା ଲୋ ବୋଉ । ଅଜ ତାଙ୍କର ଅରନ୍ଧା ଅବଢ଼ା । ସକାଳୁ ଉଠି ଦୁଇ ପ୍ରାଣୀ ଖାଲି କାନ୍ଦୁଛନ୍ତି । ପଚ୍ରଶଲେ ମୁହଁରେ କଥା ନାହିଁ ।

ଶୋଭା—ହାୟ ! ହାୟ ! କାହିଁକରେ ବାପ ! ତାଙ୍କର କେହି ମଶଗଲେ କ ? ତାଙ୍କର ମା ବୁଢ଼ୀ ଅଛନ' ? ହାୟ ! ହାୟ ! ସତେ ତୋ ଆଗରେ ମୋ ପ୍ରାଣ ଯିବ । ସତେ ତୁ ବଞ୍ଚି ଜା' ଥିବୁ ।

ଶଙ୍କରୁ—ଦବୃଟି ବୋଉ ମେହି ମଞ୍ଜା ଟଣ୍ଡକ, ଶାଗ କେଶଏ ଦେ । ବୋଇତାକୁ ଖଣ୍ଡିଏ ଦେ ! ମୁଁ ଦେଇ ଆସେ ।

ଶୋଭା—[ପୁଅପାଖକୁ ଶାଗ ପ୍ରଭୃତ ବଢ଼େଇ ଦେଇ] ଏଠିଥାଉ, ଖାଇସାର ଯିବୁ ।

ଶଙ୍କରୁ—ସେତ ନେବେ ବୋଲି ମୋତେ ଜାଣୁନାହିଁ । ସେ ଦନ ଦୁଇ ପ୍ରାଣୀ ବସିଥାନ୍ତି, ମୁଁ ଯାଇ ଲଉଟିଏ ଦେଲି । ସେଠୁ ତଣଲ ଜଣକ କହିଲା—ଭଲ ହେଲା ଆଣିଲ; କନ୍ତୁ ଆମ୍ଭେମାନେ ନବୁ ନାହିଁ । ଆମର ଦବାର ଶକ୍ତି ନାହିଁ । ସେମାନେ ଭଲ ମାଣ୍ଡ ଲୋକ ।

ଶୋଣ୍ଡୀ—ନା, ଦରୁ ନେଇ ଯା, ମୋ ଗ୍ରାଣ ପକେଇ କହୁଛୁ—ଚୋର କହୁଛୁ, ତୋ ପୁଅ ରାଣ, ଯାକୁ ଏରୁ ରଖିବୁ ।

ଶଙ୍କରୁ—[ଉତ୍‌ଥାନପୂର୍ବକ] ଯାଉଛୁ ଦେଇଆସିବ । ବର୍ଗଙ୍କୁ କାମ ଦେଖିବ । ମୁନିବ ଘରକୁ ଜଣେ ସାଧୁ ଆସିଛୁ ପରା ! ହରିଶ୍ଚନ୍ଦ୍ରର ଏତେ କାମ କାହିଁକି ? [ପ୍ରସ୍ଥାନ]

[ଶୋଣ୍ଡୀର ମଧ୍ୟ ପଶ୍ଚାତ ଦେଇ ପ୍ରସ୍ଥାନ]

[ପଟକ୍ଷେପଣ]

●

## ଦ୍ୱିତୀୟ ଦୃଶ୍ୟ

### [ଉଦ୍ୟାନ ପୁଷ୍କରିଣୀ ତଟ]

**ରାଜା, ରାଣୀ, ରୋହିତାଶ୍ୱ ଆସୀନ**

ରାଜା—[କରୁଣ ସ୍ୱରେ] ହା ବିଧି ! ହା ଦୈବ ! ମୁଁ କି ପାପ କରିଥିଲି, ମୋର ଏହି ଦାରୁଣ ଦଣ୍ଡ ଉପସ୍ଥିତ । ହେ କରୁଣା ନିଧାନ ଦେବାଧିଦେବ ଜଗନ୍ନାଥ ! ହେ ବିପଦଭଞ୍ଜନ କରୁଣାନିଧି ମଧୁସୂଦନ ! ତୁଚ୍ଛ ପଶୁପକ୍ଷୀ ସୁଦ୍ଧା ତୁମ୍ଭର ଅନନ୍ତ କରୁଣାରୁ ବଞ୍ଚିତ ନୁହନ୍ତି । ମୁଁ କି ପାପ କରିଥିଲି, ମୋର ଅକାଳରେ ମୃତ୍ୟୁ ନ ହୋଇ ମୁଁ ଏହି ଘୋର ବିପଦରେ ପତିତ ହୋଇଅଛି । ପ୍ରତ୍ୟହ ଶରୀର କ୍ଲେଶ, ଦୁଃସହ ମନୋବେଦନାରେ ପ୍ରପୀଡ଼ିତ ହୋଇ ଏହି ସୁକୁମାରୀର କଠୋର ଅପମାନ କାର୍ଯ୍ୟଶ୍ରମ ଅବଲୋକନ କରି ମୋର ଶରୀର କ୍ଷୟ ହେଉନାହିଁ କିମ୍ବା ସୁଧାମୟ ମୃତ୍ୟୁ ନିକଟକୁ ଆସୁନାହିଁ । ଏକ ମାସ ଅତୀତ ହେଲା, ପ୍ରତ୍ୟହ ନୀଚ କାର୍ଯ୍ୟ କରି, ସ୍ୱ ହସ୍ତରେ ରନ୍ଧନକରି ଯେଉଁ ସୁନ୍ଦରୀ ଲଳନା ମହାରାଜ୍ଞୀ ମୋର

ଏହି କଠୋର ପ୍ରାଣକୁ ବଞ୍ଚାଇ ରଖି ଅଛନ୍ତି, ସେ ମଧ୍ୟ ମୋ ସହିତ ପାପଭାଗିନୀ ହେବେ ? ହା ବିଧାତା ! ହା ଦେବ ! ଅଜ୍ଞାନ ଶିଶୁ ରାଜଭବନରେ ଜନ୍ମହୋଇ କେଉଁ ପାପ କରିଥିଲା; ଆଜ ତା'ପିତା ତାହାର ସୁକୁମାର ଦେହକୁ ବଞ୍ଚାଇ ପାରୁନାହାନ୍ତି । ତାହାର କ୍ଷୁଧା ଶାନ୍ତ କରିପାରୁନାହାନ୍ତି ।

ରାଣୀ—ମହାରାଜ ! ପ୍ରତ୍ୟହ ବିଳାପ କରି କରି ଆପଣଙ୍କର ଦେହ ଶୀର୍ଣ୍ଣ ହୋଇଗଲାଣି । ମୋ ସକାଶେ ଆଦୌ ଚିନ୍ତା କରିବେନାହିଁ । ଦକ୍ଷିଣା ଦେବାର ଆଜ ଶେଷ ଦିବସ । ଅଦ୍ୟାବଧି ଆମ୍ଭେ କୌଣସି ଉପାୟ ସ୍ଥିରକରି ପାରିଲୁନାହିଁ ।

ରାଜା—ଦେବୀ ! ଆମ୍ଭେମାନେ କୌଣସି ଦାରୁଣ ଅଭିଶାପର ଫଳ ଭୋଗ-କରୁଥାଏଁ । ଆଜୀବନ ଧର୍ମପଥରୁ ବିଚଳିତ ହୋଇନାହିଁ । ପାପକାର୍ଯ୍ୟ କାୟମନୋବାକ୍ୟରେ ପରିହାର କରିଅଛି ବୋଲି ଯେଉଁ ଧାରଣା ଥିଲା, ଆଜ ତାହା ସମୂଳରେ ବିନଷ୍ଟ ହେଲା । ମୋର ମିତ୍ରଜନମାନେ ନିକଟକୁ ଆସିପାରୁନାହାନ୍ତି । ଏହି ଦାରୁଣ ବିପଦ ସମୟରେ ଦକ୍ଷିଣା ବିଷୟ ସ୍ମରଣକରି ହସ୍ତପଦ ଅବସନ୍ନ ହେଉଅଛି । ପ୍ରାଣ ନୈରାଶ୍ୟପୀଡ଼ିତ ହୋଇ ମୃତ୍ୟୁମୁଖକୁ ପ୍ରଧାବିତ ହେଉଅଛି ।

ରାଣୀ—ମହାରାଜ ! ତା'ହେଲେ ମୋର ମଧ୍ୟ ଜୀବନର ଆଶା ନାହିଁ । ଏହି ଅଜ୍ଞାନ ଶିଶୁଟି କେଉଁ ସ୍ଥାନରେ ବୁଲିବ, କିଏ ତାହାର କ୍ଷୁଧା, ତୃଷ୍ଣା, ନିବାରଣ କରିବ ? ମହାରାଜ, ଭିକ୍ଷୁବାଳକ ହୋଇଥିଲେ ବଞ୍ଚିପାରନ୍ତା, କିନ୍ତୁ ବଞ୍ଚିବାର ଆଶା ନାହିଁ ।

ରୋହିତାଶ୍ୱ—ମା, ମା ! କୁଆଡେ ଯିବୁ ! ବାପା କୁଆଡେ ଯିବ ।

ରାଣୀ—ନା, କୁଆଡେ ଯିବୁନାହିଁ । ମହାରାଜ ! ଦକ୍ଷିଣା ଦାନ ଅସମ୍ଭବ । ମୃତ୍ୟୁ ଅସମ୍ଭବ । [ମୁଖରେ ଅଞ୍ଚଳ ଦେଇ ରୋଦନ]

[ବିଶ୍ୱାମିତ୍ରଙ୍କର ପ୍ରବେଶ ଓ ରାଜାରାଣୀଙ୍କର ପ୍ରଣାମ]

ବିଶ୍ୱାମିତ୍ର—ମୋର ବିଶ୍ୱାସ ନ ଥିଲା ଯେ ହରିଶ୍ଚନ୍ଦ୍ର, ନାରକୀସ୍ଥ ସଦୃଶ ନିଷ୍ଠୁର, ଘୃଣ୍ୟ, ମିଥ୍ୟାବାଦୀ ! ଦୁବୃତ୍ତ ! ମୋ ସହିତ ପ୍ରବଞ୍ଚନା ! ଅତି କଠୋର ତପସ୍ୟାର ପରାକ୍ରମ ଦେଖିବୁ । ମର୍ତ୍ତ୍ୟ ଯାତନା ଅପେକ୍ଷା, ନରକ ପୀଡ଼ା କଷ୍ଟକର କି ସୁଖକର, ସମସ୍ତ ବୁଝି ପାରିବୁ ।

ରାଜା—ପ୍ରଭୋ ! ଏକ ଦିବସ ମାତ୍ର ଅବଶିଷ୍ଟ ଅଛି । ଅପେକ୍ଷା କରନ୍ତୁ ! ମୋର ଆଉ କୌଣସି ସମ୍ବଳ ନାହିଁ । ମୁଁ, ମୋହର ରାଣୀ ଏବଂ ଏହି ଅଜ୍ଞାନ ବାଳକଟି ମାତ୍ର ମୋର ସମ୍ବଳ । ଆପଣଙ୍କର ଇଚ୍ଛା ଥିଲେ ଆମ୍ଭମାନଙ୍କ ମଧ୍ୟରୁ କାହାରିକୁ ଗ୍ରହଣ କରି ଦକ୍ଷିଣା ଦାୟରୁ ମୁକ୍ତ ଦିଅନ୍ତୁ ।

ବିଶ୍ୱାମିତ୍ର—ପାପିଷ୍ଠ ! ମୋ ସହିତ ବାରମ୍ବାର ପ୍ରତାରଣା ? ମୁଁ ରାଜସୂୟ ଯଜ୍ଞ କରିବି । ମୋର ଦକ୍ଷିଣା ଆବଶ୍ୟକ ।

ରାଜା—ମୁଁ ନିରୁପାୟ ହୋଇ କହୁଅଛି—ଆପଣ ମୋ ପ୍ରତି ସଦୟ ହୋଇ ପ୍ରସନ୍ନ ହୁଅନ୍ତୁ ।

ବିଶ୍ୱାମିତ୍ର—[କ୍ରୋଧରେ] ଏହିକ୍ଷଣି ଅଭିଶାପ ଦେବି ।

ରାଣୀ—କ୍ଷମାକରନ୍ତୁ ମହାଭାଗ ! ଆଜି ସୂର୍ଯ୍ୟାସ୍ତ ନ ହେବା ପର୍ଯ୍ୟନ୍ତ ମହାରାଜ ସତ୍ୟରୁ ବିଚଳିତ ହୋଇନାହାନ୍ତି ।

ବିଶ୍ୱାମିତ୍ର—ଅଚ୍ଛା , ପୁନଶ୍ଚ ସନ୍ଧ୍ୟା ସମୟରେ ଆସିବି । [ପ୍ରସ୍ଥାନ]

ରାଜା—
ପ୍ରାଣପ୍ରିୟେ ! ଜୀବନ୍ମୃତ ସ୍ୱାମୀ ତବ
ମୃଗୟା-ବିହାରକ୍ଳିଷ୍ଟ ପରିଶ୍ରାନ୍ତ ଭ୍ରାନ୍ତ
ଶୁଷ୍କପ୍ରାଣ ମୃଗସମ ସ୍ୱୟଂ ନିପତିତ
ଆଜୀବନ ଶରଧୀର ପ୍ରଶାନ୍ତ ଯେ ଜନ ।
ଅଛି ସେ ବିପଦ ବାତ୍ୟା ବିତାଡ଼ିତ ତରୁ,
ଭୟଙ୍କର ରଣକ୍ଷେତ୍ରେ ଶତ୍ରୁ ମୁଖେ ପଡ଼ି

ସିଂହନାଦେ ବୀର ଦର୍ପେ ବର୍ଷାଇଛୁ ପ୍ରାଣ ।
ସଂଗ୍ରାମ ପ୍ରବଳ ସ୍ରୋତ ବହିଛୁ ବକ୍ଷରେ,
କିନ୍ତୁ ହା, ଘଟିଲା ଦେବ ବିନା ଅସ୍ତ୍ରାଘାତେ
ବିଶ୍ୱାମିତ୍ର ମୁନି ମୋର ସଂହାରିଲେ ପ୍ରାଣ
ଦକ୍ଷିଣା ଦାୟରୁ ମୁକ୍ତ ନ ହୋଇ ଅଚିରେ
ନରକ ପଥିକ ହେବି ଅଭିଶାପବଳେ,
କି କରିବି ! କି କରିବି ! ହାୟରେ ବିଧାତା !
କି ଉପାୟେ ପ୍ରତିଶ୍ରୁତ ଦକ୍ଷିଣା ପ୍ରଦାନେ
ତରିବି ଏ ଭୟଙ୍କର ଦାୟିତ୍ୱ ଜଳଧି ?

ରାଣୀ— ମହାରାଜ ! ଧୈର୍ଯ୍ୟଧର ବିପଦକାଳରେ
ସ୍ୱର୍ଣ୍ଣବର୍ମ ପ୍ରାୟ ଧର୍ମ ରହିଛୁ ଅଙ୍ଗରେ ।
କର୍ମକ୍ଷେତ୍ରେ ସତ୍ୟ, ଧର୍ମ ପ୍ରଧାନ ସହାୟ
ନରକେ, ସ୍ୱରଗେ ତାହା ଏକମାତ୍ର ସଖା
ଏକମାତ୍ର ଦୀପରେଖା ତମାଚ୍ଛନ୍ନ ଭବେ ।
ଆଜୀବନ ସତ୍ୟ ଯାର ଜୀବନ ସର୍ବସ୍ୱ ।
ପ୍ରତିଜ୍ଞା ପାଳନେ ଯେହୁ ହସାଇ ପରାଣ,
ମହାରଣ୍ୟ,ଜଳ, ଗିରି, ବହ୍ନି ତୁଚ୍ଛ କରି,
ଆଜି କି ସେ ନରପତି ଇନ୍ଦ୍ରପରାକ୍ରମୀ
ଧର୍ମଦ୍ରୋହୀ ହୋଇ ପଡ଼ିବେ ନରକେ ?
କାହାର ଆଶ୍ଚର୍ଯ୍ୟ ! ପୁଣ୍ୟଶ୍ଳୋକ ପ୍ରଜାନାଥ
ଅନାଥ ଦରିଦ୍ରନାଥ ବିପ୍ର ସେବାରତ ।
ଧାର୍ମିକ-ପ୍ରବର ଶ୍ରେଷ୍ଠ ରାଜର୍ଷିଭୂଷଣ,
କରିବ ନରକଗାମୀ ଯେ ପର୍ଯ୍ୟନ୍ତ ଭବେ
ସୂର୍ଯ୍ୟଚାନ୍ଦଙ୍କ ରଶ୍ମିଜାଳେ କରିବେ ପାଳନ ।
ଯେ ପର୍ଯ୍ୟନ୍ତ ନଭୋଦେଶେ ତାରକା ନିକର,

ସ୍ୱପଦୁ ସ୍ଖଳିତ ନୋହି ରହିଥିବେ ଭବେ
ସେ ପର୍ଯ୍ୟନ୍ତ ସ୍ୱାମୀ ଯଶଃ ବିଶ୍ୱ ବକ ଥିବ ।
ଦ୍ୱିତୀୟ ସୂର୍ଯ୍ୟ ସମାନ, ଆସ ହେ ବାସବ,
ଧର୍ମରାଜ, ଧାତା, ଦଶଦିଗପତି ହର
ତ୍ରିଲୋକ ରକ୍ଷକ ବିଷ୍ଣୁ ନାରାୟଣ ହରି ।
ଦେଖିଯାଅ କର୍ମକ୍ଷେତ୍ରେ କ୍ଷତ୍ରିୟ ରତନ
ପୁଣ୍ୟଧନ ରାଜା ସତ୍ୟପ୍ରିୟ ହୋଇ ଯତ୍ନେ,
ପାଳିବେ ସତ୍ୟକୁ, ମହାରାଜ ଧୈର୍ଯ୍ୟଧର ।

[ଭୂପତିତପ୍ରାୟ ହୋଇ]

ଥାଉଁ ଏ ଜୀବନ ପ୍ରିୟତମ ପ୍ରାଣପତି
ନ ଲଭିବେ ଅଧୋଗତି ସତ୍ୟ ଯଦି ମୁହିଁ ।
କି ଉଦ୍ଦେଶ୍ୟେ ସୂର୍ଯ୍ୟବଂଶେ ଦାର ପରିଗ୍ରହ
ନାହିଁକି ହେ ପ୍ରାଣନାଥ ପୁତ୍ର ତପପାର୍ଶ୍ୱେ ?

ରାଜା— ପୁତ୍ରକାମେ କରେ ନୃପ ଦାର ପରିଗ୍ରହ
କିନ୍ତୁ ମୁଁ ପ୍ରଶ୍ନରଭାବ ଗ୍ରହଣେ ଅକ୍ଷମ
ବସନ୍ତ ମଳୟସମ ଶୁଷ୍କତରୁ ହୃଦେ,
ଉଜ୍ଜୀବିତକର ମୋତେ ତବ ସୁଧାବାଣୀ
କ୍ଷଣେ ଶାନ୍ତ ଆଶା ଦିଏ. କିନ୍ତୁ ପ୍ରିୟମ୍ବଦେ !
ଶେଷକର ଉକ୍ତି, କି ଉପାୟେ ସତ୍ୟରକ୍ଷା
ହୋଇବ ମୋହର ? ତୁମ୍ଭେ ମୋର ଏକମାତ୍ର
ସଚିବ, ସଜନୀ, ଅର୍ଦ୍ଧାଙ୍ଗିନୀ, ଅର୍ଦ୍ଧପ୍ରାଣ

ରାଣୀ— ମହାରାଜ ହୁଅ କ୍ଷମେ ନିର୍ମମ ମୋଠାରେ,
ଯେଉଁ ବଂଶେ ପୁତ୍ରକାମେ ଦାର ପରିଗ୍ରହ ।
ସେ ବିଶ୍ୱଭୂଷଣ ତୁମ୍ଭେ ଲଭିଅଛ ପୁତ୍ର

ଯେବାଣୀ ସଦ୍‌ଗୁଣ, ଲକ୍ଷ୍ୟରଖି ସତ୍ୟଧର୍ମେ
ବିକ୍ରୟ କରଣ ମୋତେ କୁମର ସହିତେ
ଦାନ ଦକ୍ଷିଣା ପ୍ରଦାନେ ହୁଅ ଦାୟମୁକ୍ତ ।

ରାଜା— କୋଟିବଜ୍ର କବା ଏକତ ହୋଇଣ
ପ୍ରହାରିଲା ହୃଦେ ମୋର, ଦାବାନଳ କବା
ସହସ୍ର ରସନାହୋଇ ପ୍ରବେଶିଲା ହୃଦବନେ
ପୋଡ଼ିବାକୁ ପ୍ରାଣମୃଗ ସମ୍ପୂର୍ଣ୍ଣ କ୍ଳିଷ୍ଟ ଯେହ୍ନ,
ଭୁଜଙ୍ଗମ କାଳକୂଟ ପ୍ରବେଶିଲେ ଦେହେ
ଈଦୃଶ ଯାତନା ପ୍ରାଣେ ଭୁଞ୍ଜନ୍ତି ମାନବେ ?
ଦେବି ! ସୁକୁମାର ଓଷ୍ଠ ତବ ଶିରୀଷ କୋମଳ
ଦଗ୍‌ଧ କି ହୋଇଛି ବାକ୍ୟ ପ୍ରଳୟ ଅଗ୍ନିରେ ?
ବିକ୍ରୟ କରଣ ଆଜି ଦାରା ସୁତ ମୂର୍ତ୍ତି
ଜୀବନ ସଙ୍ଗିନୀ ପ୍ରିୟ ମଧୁର-ଭାଷିଣୀ ।
ବିଷାଦ ତମ ଆଚ୍ଛନ୍ନହୃଦୟ ଚନ୍ଦ୍ରମା
ବିପଦରେ ଏକମାତ୍ର ସଙ୍ଗିନୀ ତୋଷିଣୀ
ସମ୍ପଦେ ଆନନ୍ଦ ରୂପା ଜୀବନ ସର୍ବସ୍ୱ
ବିକ୍ରୟ କରିବି ଆଜି ବର୍ବର ପରାଣେ ?
ବିଧି କି ଦାରୁଣ ଲେଖା ଲେଖିଛି ମୋ ଭାଲେ,
ପୃଥିବୀ ସାମ୍ରାଜ୍ୟ ହେଲେ ନିକ୍ଷେପିଲି ଦୂରେ
ସହିଲି ଦାରୁଣ ଦୁଃଖ ରାଣୀ,ସୁତ ସହ
ତଥାପି ଶେଷ ନୋହିଲା ବିଧାତା ଗଞ୍ଜଣା ।
ବିକ୍ରୟ କରିବି ସୁତେ ପ୍ରାଣସମ ଶିଶୁ ।
ଆପଦଗ୍ରସ୍ତା ଅଜ୍ଞ ଜନକ ଆଶ୍ରିତ ।
ଅଖିଳ ପୃଥିବୀରାଜ୍ୟେ ଏକଛତ୍ରହୋଇ
ଶାସିଥାନ୍ତା ଯେହ୍ନ ପ୍ରଜା ହୋଇବକି ଶେଷେ

ଆତତାୟୀସମ ଯେତା ..ଔରସେ ଜନମି
ଜୀତଦାସ ବପଣୀରେ ! ହା ଦୈବ ! ହା କଷଣ
ଧିକ ଏ ପଷଣ ଧରା, ମାନବ ନରକ;
ନିଷ୍ଠୁର ପଷଣ ତୁମ୍ଭ ପାପକଳେବର
ରହିଛୁ କପର ଦଣ୍ଡେ ଜଳୁଛୁ ଦେଖିଣ
ରାଜଦର୍ପ ଅହଙ୍କାର ଯାତନା ବହ୍ନିରେ
ପ୍ରିୟେ ! ପରିଣତାହୋଇ ସରବ ପ୍ରଥମେ
ଉଚାରିଲ କଟୁବାକ୍ୟ ପଙ୍କଜବଦନୁ ।
ବିଷାକ୍ତ ଶାୟକ ପ୍ରାୟେ ବିନ୍ଧିଲ ମୋ ପ୍ରାଣେ ।
କି ଶକ୍ତ ଦାରୁଣ ଉକ୍ତ କହୁଛୁ ସେ ଚକ୍ଷୁ !
ସେଷୁଛୁ ଚଣ୍ଡାଳକାର୍ଯ୍ୟେ ଅପ୍ରିୟ ଭାଷାରେ,
ପଳାଇବ କାହିଁ ତିନଲୋକେ ସ୍ଥାନ ନାହିଁ
ବିକ୍ରୟକରିବ ସୁତ ସୁକୁମାରୀ ରାଣୀ
ମୋ ହସ୍ତେ ଅର୍ପିତ ପରିଣୟ ପ୍ରେମପାଶେ
ଅବଳା ରକ୍ଷକ ରାଜା ଦୀନ ଦୁଃଖହାରୀ
ବିକ୍ରୟକରିବ ସ୍ୱାର୍ଥେ ନିଜ ରାଜଲକ୍ଷ୍ମୀ !
ଫିଟାଅ ନରକଦ୍ୱାର ଅମ୍ଳାନ ବଦନେ
ପଶିବ ମୁଁ ତହିଁ ଧର୍ମରାଜ ! ତବ ଧର୍ମ ! [ମୂର୍ଚ୍ଛା ।]

ରାଣୀ— ମହାରାଜ ! ମହାରାଜ ! ଏକି ଦଶା ତବ ?
ହାୟ ! ହାୟ ! ରତ୍ନ ବିଜଡ଼ିତ ଶଯ୍ୟା
ପ୍ରମୋଦ ଉଦ୍ୟାନ ଲତା ନିକୁଞ୍ଜ ସେବିତ
ହୃଦୟ ରତନ ମୋର ସେହି ମହାରାଜ,
ଧୂଳିରେ ଶାୟିତ !—

[ନିକଟକୁ ଯାଇ ଅଞ୍ଚଳରେ ବ୍ୟଜନ କରି]

ମହାରାଜ ! ଆର୍ଯ୍ୟପୁତ୍ର !
ଡାକୁଛ କାତରେ ମୁହିଁ ଏକାକିନୀ ଦାସୀ
ଉଠବାରେ ଦେଖିବି ମୁଁ ଶେଷଦେଖା ଭବେ
ଏ ଜୀବନ ରୁଛୁ ଏବେ ପ୍ରାଣନାଥ ପଦ
ଧୈର୍ଯ୍ୟ ଦୁର୍ଗ ମୋର ହୋଇ ଭୂମିରେ ପତିତ
କି କରିବି ମରୁଦେଶେ କେ ମୋର ସହାୟ !

[ନେପଥ୍ୟକୁ ଯାଇ ଜଳଆଣି ସେଚନପୂର୍ବକ]

ନା, ମୂର୍ଚ୍ଛାଭଙ୍ଗ ହେଉନାହିଁ । ଦେହରେ କଷ୍ଟ, ଅନାହାର, ପ୍ରତ୍ୟହ ଦାରୁଣ ଅପମାନ, କେତେ କଷ୍ଟ ମନୁଷ୍ୟ ଦେହରେ ସହ୍ୟହେବ ? ହାୟ ! ମୋର ଅଦୃଷ୍ଟରେ ଏହା ଦେଖିବାକୁ ଥିଲା ! ଯେଉଁ ପୃଥ୍ୱୀନାଥ ମହାରାଜ କୁଙ୍କୁମ, ଚନ୍ଦ୍ରନରେ ସୁବେଶ ହୋଇ, ସୁକୋମଳ କୁସୁମଶଯ୍ୟାରେ ଶୟନ କଲାବେଳେ ମଧୁର ସଙ୍ଗୀତରେ ନିକୁଞ୍ଜ ଉଦ୍ୟାନ ପୁଲକିତ ହେଉଥିଲା, ଆଜି ସେ ଅନାହାରରେ ଧୂଳିରେ ପତିତ ହୋଇଅଛନ୍ତି । ହାୟ ! ବିଧାତା, ମୋହର କପାଳରେ ଏତେଦଣ୍ଡ ଲେଖିଥିଲୁ ।

[ଶୋକଭରେ ଗୀତ]

ପାସୋରି କି ଥିବ ରାଜନ
ଫୁଲତୋଳା, ଫୁଲମାଳା କୁଞ୍ଜଗୃହ ଆସନ ।
ହୃଦୟ ମନ୍ଦିରେ ରଖି ଦେଖୁଥିଲି ଦିବା ନିଶି
କାହିଁ ସେ ପ୍ରେମମୂରତି ଆଜି ଶୂନ୍ୟ ଜୀବନ । ୧ ।
କେତେକାଳ ଏ ମରୁଦେଶ ଥିବ ପଦ ଅବଶେଷେ
କି ସରାଗେ ଅଭିମାନୀ ଯାପିବ ନିଶିଦିନ । । ୨ ।

[ଭୂଉଦନପ୍ରାପ୍ତେ] ମହାରାଜ ! ରୋହିତାଶ୍ୱ ଡାକୁଛି ଉଠ । କଣ କରିବି? ଶେଷରେ ଏହିଦଶା ଘଟିଲା । ଗଭୀର ମୂର୍ଚ୍ଛା । ହାୟ ! ମୋ

ମନରେ କେତେପ୍ରକାର ଆଶଙ୍କା ଜାତ ହେଉଅଛି ।

[କ୍ଷଣକାଳପରେ ଭୀତ ବ୍ୟସ୍ତ ସହକାରେ ଦଣ୍ଡାୟମାନହୋଇ ସ୍ୱଗତ]

ନା, ନା, ମୂର୍ଚ୍ଛା ନୁହେ । ସ୍ନେହସ୍ୱଜନେ ପାପଭସ୍ମ
ସର୍ବାଗ୍ରେ ପୀଡ଼ଇ । ଗଲେଣି କି ମର୍ତ୍ତ୍ୟଗୁଡ଼
ହୃଦୟରତନ ଧନ ମାନସ-କୌମୁଦୀ
ଆଶା ମନ୍ଦାକିନୀଧାରା ଗରବ ସୁମେରୁ ।
କଣ୍ଠ ପାରିଜାତମାଳା ପରାଣସର୍ବସ୍ୱ ।
ହାୟ ! ହାୟ ! ହାୟ ! ନୃସିଂହ ଦାରୁଣବଧି
କୋମଳ ପରାଣଦେଖି ଯାତନା ଆହ୍ଲାଦ ଅଣେ
ଏକାକିନୀ କିବା ବଞ୍ଚାଇଛୁ ଏପର୍ଯ୍ୟନ୍ତ
ସହିବ ଏ ମରଲୋକେ ନରକ ପୀଡ଼ନ;
କିନ୍ତୁ ରହିଛି କି ପ୍ରାଣସ୍ଥାନ ପ୍ରାଣରୁଦ୍ଧ
ଏ ଶଯ୍ୟାରେ ମୋର ମୃତ ବା ମୁମୂର୍ଷୁ ଦେଖି
ପ୍ରିୟ ପ୍ରାଣପତି ଏକମାତ୍ର ସଖା ମୋର ?
ବଞ୍ଚିଛୁ କି ମୁହିଁ ଅସ୍ତମିତ ଦେଖି ନେତ୍ରେ
ହୃଦୟ ଆକାଶୁଁ ମୋର ସମୁଜ୍ଜ୍ୱଳ ରବି ?
ମୃତ୍ୟୁ ତାମସ ରଜନୀ ତଥାପି କି ଦୂରେ ?
ସମ୍ମୁଖେ ନ ଆସି ପେଷି ଶୋକ ବସ୍ୱାସିକା
ହେ ଦାରୁଣ ବିଧାତା ସୃଜ ରମଣୀର ଦେହ
କିସବେ ଏ ଲୌହପ୍ରାଣ ରଖିଲୁ ତହିଁରେ ।
ଦେଖିଲି ସ୍ୱନେତ୍ରେ ପତି ରାଜପରିଚ୍ଛଦ
ତେଜିଣ ପିନ୍ଧିଲେ ଜୀର୍ଣ୍ଣ ତପସ୍ୱୀ-ଭୂଷଣ
ସ୍କନ୍ଧେଧରି ପୁତ୍ର ପଦବ୍ରଜରେ ଆସିଲେ
ଅପାର ଯନ୍ତ୍ରଣା, ପୀଡ଼ା, ତୀବ୍ର ଅପମାନ
ପ୍ରହାର ସହିଲେ ରାଜା; ଏହିହସ୍ତେ ମୋର

ପରଶିଛୁ ଅର୍ଦ୍ଧାହାର ଦ୍ୱିପ୍ରହର ବେଳେ
ସହୁ ଏ ଦାରୁଣ ଦୁଃଖ, ମରମ ବେଦନା
ଦବା ନଣି ହୃଦୟରୁ ଶୋଣିତ ପ୍ରବାହ
ଅଶ୍ରୁ ଛଳେ ବହୁଥିଲା ହୃଦୟରୁ ମୋର,
ଆଉ ନ ପାରିବ ସହି, ନ ଦେଖିବ ନେଜେ
ହୃଦୟ ରତନ ମୋର ଭୂମିରେ ଲୁଣ୍ଠିତ
ରାଜପଥେ ଭିକ୍ଷୁ ପ୍ରାୟେ ମୁମୂର୍ଷୁ ହୋଇଣ;
ଯାଅରେ କଳଙ୍କ ପ୍ରାଣ, ଯାଅ ଶୀଘ୍ର ଯାଅ
ଅର୍ଦ୍ଧପଥେ ଅଭ୍ୟର୍ଥନା କରିବୁ ପତିଙ୍କୁ ।
ଶୂନ୍ୟଦଶେ ଧରାଲୋକ ଶୂନ୍ୟ ସ୍ୱର୍ଗପୁରୀ
ମନୁଷ୍ୟବିହୀନ ପୃଥ୍ୱୀ ବୃକ୍ଷଲତାହୀନ
ପଶୁହୀନ, ବାୟୁହୀନ, ଉଦ୍ୟାନବିହୀନ
ଦିଶୁଛି କେବଳ ସେହି ସୁନ୍ଦର ପ୍ରତିମା । [ମୂର୍ଚ୍ଛା]

ରୋହିତାଶ୍ୱ—ମା ! ମା ! ମୋତେ ଭୋକ କରୁଛି । ଖାଇବାକୁ ଦେଉନାହୁଁ କାହିଁକି ? ସକାଳୁ ଖାଇନାହିଁ । ଖାଲି ପାଣି ପିଇଛୁ । ଖାଇବାକୁ ଦେଉନାହୁଁ । [ଜନନୀ ନିକଟରେ ବସି କ୍ରନ୍ଦନ]

[ବିଶ୍ୱାମିତ୍ରଙ୍କର ପ୍ରବେଶ ଓ ଜଳ ସେଚନ କରୁଥିବା ରାଜା, ରାଣୀଙ୍କର ଉତ୍‌ଥାନ ଏବଂ ପ୍ରଣିପାତ]

ବିଶ୍ୱାମିତ୍ର— ଧର୍ମନଷ୍ଟ ସତ୍ୟନଷ୍ଟ କପଟୀ ମାନବେ
ଦ୍ୱିଗୁଣ ଯାତନା ପ୍ରାଣେ ଭୁଞ୍ଜନ୍ତି ନିୟତ;
ହରିଶ୍ଚନ୍ଦ୍ର ! ଜାଣିଥିଲି ଧର୍ମବଳେ ରାଜା
ସୂର୍ଯ୍ୟବଂଶ ସମୁଜ୍ଜ୍ୱଳ କରିବ ଅକ୍ଲେଶେ;
କିନ୍ତୁ କି କୁବୁଦ୍ଧି ବଳେ ପ୍ରଣୋଦିତ ହୋଇ
ଲଭିଲି ସାମ୍ରାଜ୍ୟ ଦାନ ତୋଠାରୁ ହରଷେ ।

ଚନ୍ଦ୍ର,ସୂର୍ଯ୍ୟ, ଗ୍ରହ, ତାରା ପରିଦୃଶ୍ୟ ଭବ
ସତ୍ୟରେ ପ୍ରଥିତ, ସତ୍ୟଯୋଗେ ସୃଷ୍ଟି ରକ୍ଷା
ସତ୍ୟରେ ଆବଦ୍ଧ କର୍ମଫଳ କର୍ମରାଜ୍ୟ
ଜଡ଼ ଦେହମାନ ଦର୍ପ ସତ୍ୟରୁ ସ୍ଖଳିତ
ସତ୍ୟ ଶୁଦ୍ଧ ନ ହୋଇଲେ ପୀଡ଼ନ୍ତ ସର୍ବଣେ
ସତ୍ୟଭକ୍ତ ଶ୍ରଦ୍ଧା ଯାର ସତ୍ୟ ଯାର ବ୍ରତ
ତୁଚ୍ଛଦେହ ସୁଖମାନ ବିଷାକ୍ତ ମଣଇ
ସତ୍ୟମୟ ସୁଧାପାନେ ଆନନ୍ଦିତ ମନେ;
ସତ୍ୟବଳେ ପ୍ରତିଷ୍ଠିତ ବ୍ରହ୍ମା ଧାତା ପଦେ ।
କପଟୀ ମାନବଧର୍ମ ସ୍ୱକତବ୍ୟ ବେଶେ
ତପ୍ତସ୍ୱର୍ଣ୍ଣ ବର୍ମ ପ୍ରାୟେ ଅନେ୍ୟ ସମୁଜ୍ଜ୍ୱଳ
ଦହଇ ନିଜକୁ ଅନ୍ତର୍ହିତ ଅଗ୍ନି ତାପେ,
[ସ୍ୱଗତ] ବାକ୍ୟବ୍ୟୟ ବୃଥାଶ୍ରମ କରୁଛ କପାଇଁ ?
ତସ୍କର ସଦ୍ଗୁଣ ରଜା ବ୍ରହ୍ମସ୍ୱ ହରିଲେ
ସାୟଂକାଳେ ଶାପାନଳେ ହୋଇବ ପତିତ [ପ୍ରସ୍ଥାନ]

ରାଜା— ମନ୍ତ୍ରଜଳେ ଚେତାଇଲେ ବିଶ୍ୱାମିତ୍ର ମୋତେ
ଭୁଞ୍ଜିବାକୁ ପ୍ରତିକ୍ଷଣ ସର୍ବଣ କଷଣ
କରୁଣା ଜଳରେ ସିକ୍ତ ସୁକୋମଳ ରମ୍ୟ
ଧୂଳିଶଯ୍ୟା ଲାଗୁଥିଲା ଚନ୍ଦନ ସର୍ବସ୍ୱେ ।
ମୂର୍ଚ୍ଛାଯୋଗେ କ୍ଷଣେମାତ୍ର ମାନସ ବିଶ୍ରାମ
ଗଢ଼ିନେଲା ଦେହ, ମନ, ସହିବାକୁ ପୁନଃ
କୋଟିଗୁଣେ ମର୍ମପୀଡ଼ା, ଅସ୍ତାଚଳେ
ରବି ତମାଚ୍ଛନ୍ନ, ମମ ହୃଦେ ନ ଦେଖାଇ ପଥ
କରିବେ ଗମନ, ମଗ୍ନହେବି ସୁ ଗଭୀର
ପାତକ ସାଗରେ ବଦ୍ଧ ଅଙ୍ଗୀକାର କଣ୍ଟକ
କାରାଗାରେ ରୁଦ୍ଧ ମୃତ୍ୟୁଦଣ୍ଡ ପ୍ରତୀକ୍ଷାରେ

ଦୋଷୀପ୍ରାଣ୍ତେ ଏହି ସ୍ଥାନେ ବସିବ କାତରେ
ସୂର୍ଯ୍ୟବଂଶ ଲୀନହେବ ସୂର୍ଯ୍ୟାସ୍ତ ସହିତ । [ଉପବେଶନ]

ରାଣୀ—[ସରକ୍ତ] ଉଠ,ଉଠ ମହାରାଜ ! ଉଠ ବୀରଶ୍ରେଷ୍ଠ
ଉଠ ହେ ନୃପତିକୁଳ ସମୁଜ୍ଜ୍ୱଳ ରବି
କର୍ମକ୍ଷେତ୍ରେ କର୍ମବୀର ହୋଇଣ ଦେଖାଅ,
ନଶ୍ୱର ଏ ରକ୍ତମାଂସ ଶରୀର ମମତା ।
ତେଜିବ କି ନାହିଁ ମୋହ ମାନ ଅଭିମାନ
ସତ୍ୟବ୍ରତ ସତ୍ୟସେବା ଆଜନ୍ମ ଆଚର ।
ଜାଣିବେ କି ଭବେ ଅଯୋଧ୍ୟା ନୃପତି
ନିଜ ମୋହେ ବିନାଶିଲେ ସଞ୍ଚିତ ଧରମ ?
ସତ୍ୟ ଲଂଘି ବିଷ ଢାଳି କଲେ ଅଜ୍ଞାନେ,
ପୁଣ୍ୟ ପୀୟୂଷ ସାଗର ? ଆଉଁ ଏ ଜୀବନ
ନ ଦେଖିବି କୁଳପୂଜ୍ୟ ସୂର୍ଯ୍ୟଦେବ ଆଜି
ନୃପକୁଳ ରତନମଣି ଧାର୍ମିକ ପ୍ରବୀର
ଭସାଇ କଳୁଷତମେ ଯିବେ ଅସ୍ତାଚଳେ ।
ଉଠ, ଉଠ ମହାରାଜ ! ଉଠ କର୍ମବୀର !
ସୁଦୃଢ଼ ହୃଦୟେ ଆସ ତେଜି ଏ ବିଷାଦ
ତୁଚ୍ଛ ଅଳସତା, ମୋହ ଅଜ୍ଞାନ ଜଡ଼ତା ।

ରାଜା—[ଉତ୍‌ଥିତହୋଇ] ମୂର୍ଚ୍ଛାବେଗେ ମନସ୍ତାପେ ଭୁଲିଥିଲି ଦେବି
ସୁନ୍ଦର ମୋହିନୀ ରୂପ ତବ ସୁଧାବାଣୀ
ଅକଞ୍ଚନ ନୃପଅଙ୍ଗେ କନକ ଲତାକୁ
ଭୀଷଣ ସ୍ୱପନ ସ୍ମରି ହୋଇଛୁ କମ୍ପିତ
ଦଗ୍‌ଧ ଏ ପରାଣ ମୋର, ଶୁଣିବକି ସଖୀ
ରସନା ବଦନକାରୀ ସେହି ସ୍ୱପ୍ନକଥା ?

ରାଣୀ— ଶୀଘ୍ର କହ ନୃପମଣି କି ସ୍ୱପ୍ନଦର୍ଶନେ
କମ୍ପିତ ହେଉଛୁ ତବ ସୁକୁମାର ଅଙ୍ଗ

ରାଜା— ଦକ୍ଷିଣା ପ୍ରଦାନେ ତେଜି ଲଜ୍ଜା ଅଭିମାନ
ନୃଶଂସ ଚଣ୍ଡାଳ ସ୍ଥାନେ ବିକ୍ରୟ କରିଲି
ପ୍ରିୟତମା ରାଣୀ,ଶିଶୁ କୁମାର ସହିତ

ରାଣୀ—ନୁହେଁ ସ୍ୱପ୍ନ ମହାରାଜ ! ନୁହେଁ ମିଥ୍ୟାସ୍ୱପ୍ନ
କହିଥିଲି ସ୍ୱୟଂ ମୁହିଁ ଉପାୟ ନ ଦେଖି
ପତ୍ନୀ ପୁତ୍ର ବିପଣୀରେ କରିଣ ବିକ୍ରୟ
ଦକ୍ଷିଣା ପ୍ରଦାନେ ଶୀଘ୍ର ହୋଇବ ତତ୍ପର ।
[ରାଜା ମୁଖ ବାରଦେଇ ବୁଲିଯିବାରୁ]

[ବିରକ୍ତି] କହୁଛି ଏକ୍ଷଣି ପୁଣି ଶୁଣ ନୃପମଣି
ନ ଗଣି ଅଳୀକମାନ ତ୍ୟଜ ଏ ମମତା
ବିକ୍ରୟ କରନ୍ତୋତେ ରକ୍ଷାକର ସତ୍ୟ
ରକ୍ଷାକର ସୂର୍ଯ୍ୟବଂଶ ସମୁଜ୍ଜ୍ୱଳ କୀର୍ତ୍ତି
ତମସଙ୍ଗେ ଶିଶୁଦର୍ପ ଦେହ ଅଭିମାନ ।
ଯୁଗେଯୁଗେ ରହୁ କୀର୍ତ୍ତି ଭାସ୍କର ସମାନ ।

ରାଜା— ଚଣ୍ଡାଳ ଔରସଜାତ ନୋହିଲେ ରେ ତୁହି
ହରିଶ୍ଚନ୍ଦ୍ର ନାମଧର ନୃପତି କୁଳରେ
ତେଜସ୍ୱର ମାନ ବଂଶେ କ ପାଇଁ ଜନ୍ମିଲୁ ?
ପ୍ରିୟମୁଦା ପ୍ରିୟବାଣୀ ନିଷ୍ଠୁର ବଚନ
ଆଉ ନ ଶୁଣିବ କର୍ଣ୍ଣେ ଜଳମଗ୍ନ କାଳେ
କ୍ଷୀଣ ହେମତନୁ ମୋର ଅଗ୍ନି ପ୍ରଜ୍ୱଳିତ ।

ରାଣୀ— [ଶୋକଭରେ ମହାରାଜାଙ୍କ ପାଦରେ ଲୋଟି]
ମହାରାଜ ! ମହାରାଜ ! କ୍ଷମାକର ମୋତେ
ନୁହେଁ ମୁଁ କାଞ୍ଚନତନୁ ବସନ୍ତ ମଳୟ

ମଧୁର ଆଦର ଭାଷା ତବ ସୁଧାବାକ୍ୟ
ଢେଳାଏ ହୃଦୟେ ମୋର-ନିଜ ଅଯୋଗ୍ୟତା
ତୁଚ୍ଛ ଏ ଶରୀର ମୂଲ୍ୟେ ତବ ପଣରକ୍ଷି
ମଣ୍ଡିତ ନ ହେଲେ ମଣିବି ଜୀବନ ଧନ୍ୟ,

ରାଜା— ବାରମ୍ବାର ସେହି ଭାଷା ସେହି ଅଗ୍ନି ତାପ ।
ସତେ କି ଏ ଦଗ୍ଧପ୍ରାଣ ପାପମୟ ଘୃଣ୍ୟ
ନରକ ସମାନ କଣ ରଖିବ ଦେହରେ ?
ସ୍ୱାର୍ଥଲୋଭେ ରାଣୀ ସୁତ କଟାଇବ ବନ୍ଧୁ ?

ରାଣୀ—[ଉତ୍‌ଥିତା ହୋଇ] ସେହି ସ୍ୱାର୍ଥେ ମୋର ସ୍ୱାର୍ଥ ସନ୍ନିବିଷ୍ଟ ଅଛି
ଅର୍ଦ୍ଧାଙ୍ଗିନୀ ମୁହିଁ ତବ ପଣେ ମୋର ପଣ
ଫେରାଇ ନୟନ ଦେଖ ଆକାଶ ମାର୍ଗରେ
ଅସ୍ତାଚଳ ଅଭିମୁଖେ ଦୁଃଖେ ଅଧୋମୁଖେ
ନିଜକୁଳ ପଣନାଶ ଭୟରେ ଆକୁଳ
ମୂକ ଦିନମଣି କ୍ଷିପ୍ରପଦେ ଯାଉଛନ୍ତି
ସମୌନ ମୁଖରେ, ତବ କୀର୍ତ୍ତିମାନ ଆଶା
ପ୍ରଖର କିରଣଛଳେ ହୋଇଛି ପ୍ରକାଶ
ମୂକପକ୍ଷୀ ମୂକଲତା ମୂକ ବୃକ୍ଷରାଜି
କର୍ଣ୍ଣେ ମୋର କହୁଛନ୍ତି ନୀରବ ସଙ୍ଗୀତେ
ସ୍ୱାମୀ ତବ ଚିରଂଜୀବୀ ଚିରନ୍ଦୁର ଶୀର୍ଷ
ରାଜନ କାରଣ ଚିର ରହିଥିବ ଭବେ;
ଊର୍ଦ୍ଧ୍ୱେ ଦେଖ ସୁବିଶାଳ ସୁନୀଳ ଆକାଶ
କହୁଛନ୍ତି ମୋ କର୍ଣ୍ଣେ ଆସି ଅସ୍ପଷ୍ଟ ଭାଷାରେ
କୀର୍ତ୍ତିସୁଖ ଅଟେ ସିନା ଅନନ୍ତ ଅକ୍ଷୟ
ସଙ୍କୀର୍ଣ୍ଣ ମମତା ମୋହ ଦୁଃଖ ସହଚର ।

ରାଜା—[ସ୍ୱଗତ] ପତିବ୍ରତା ପ୍ରିୟବାକ୍ୟ ଅମ୍ରିୟ ମଣୁଛୁ
ସ୍ୱୟଂଧର୍ମ କମ୍ବା ଆସି ରମଣୀ ହୃଦୟେ
ମୃତସଞ୍ଜୀବନୀ ମନ୍ତ୍ରେ ଚେତାଉଛୁ ଜୀବ
ମୋହ କାଳସର୍ପମୁଖେ ହୋଇଛୁ ଯା ନଷ୍ଟ ।
କ୍ଷଣେଜାଗେ ମୋହ କ୍ଷଣେ ଜ୍ଞାନ ରଶ୍ମୀମାଳା
ଅଦୂରେ ଦଶଇ ମୋତେ କୀର୍ତ୍ତି ରଥପଥ ।
ଭୁଲାଏ ତାମସ ଲଜ୍ଜା ସୁତ ଜାୟା ଲୋଭ
ଆଶ୍ରିତ ଆସକ୍ତ ସୁଧାଧର୍ମ ପିଲୁଯାହା;
ଅଥବା ପୂର୍ଣ୍ଣିର ଚନ୍ଦ୍ର ଜ୍ଞାନ ଜ୍ୟୋତ୍ସ୍ନାଲୋକେ
ମୋହ ଅନ୍ଧକାର ଗୁଡ଼ା ଦଶୁଛୁ ଏସନ

ନଦେଲେ ଦକ୍ଷିଣା ଦାନ ସାୟଂକାଳେ ଯିବ
ପତ୍ନୀ-ପୁତ୍ର ମୋହ ଦୁଃଖ ଅନନ୍ତ ଆକାଶସମ
ଆକାଶ ସ୍ଥିତିପର୍ଯ୍ୟନ୍ତ ରହିବ ଅକ୍ଷୁଣ୍ଣ ।
ରଶ୍ମୀସମ ଅର୍ଦ୍ଧାଙ୍ଗିନୀ ଦେଖାଉଛୁ ନିଶ୍ଚିତ
ସେହି ପଥେ ବାରମ୍ବାର; ପାଳିବ ତା ବାକ୍ୟ
ପ୍ରାଣପ୍ରିୟା ମହାରାଣୀ କୀର୍ତ୍ତି ଆତ୍ମସମ
ଚିରକାଳ ସଙ୍ଗେଥିବ ଧର୍ମ ସୁଧାକର ।

[ପ୍ରକାଶ୍ୟେ]-ପ୍ରାଣପ୍ରିୟେ ! ଶୀଘ୍ରଆସ ବସଣୀକୁ
ତବ ଉପଦେଶ ସ୍ମରି କରିବ ବନ୍ଧନ
ନିଜପ୍ରାଣ ଅବଲମ୍ବେ ରାଣୀରୂପେ
ଯାହା ସମ୍ମୁଖେ ଦଶୁଛୁ; ଗୁଡ଼ଯିବ ପ୍ରେମମୟି !
[ଅଞ୍ଚଳ ମୁଖରେଦେଇ ରୋଦନ]

ରାଣୀ— ଆସ ନାଥ ଆସମୋର ହୃଦୟ ରତନ
ଆସହେ ବସନ୍ତ ମୋର ମଳୟ ପବନ
ଖୁଆଇବ ଅନ୍ନିଆଗେ ଶେଷବାର ମୁହିଁ

କ୍ଷୁଧାତୁର ସୁତ ମୋର ହେଲାଣି କାତର ।
[ରୋଦନ କରୁଁ କରୁଁ ସମସ୍ତଙ୍କର ପ୍ରସ୍ଥାନ]

[ପଟ୍ଟକ୍ଷେପଣ]

●

# ତୃତୀୟ ଦୃଶ୍ୟ

## [କକ୍ଷ]

[ବିଶ୍ୱାମିତ୍ର ଆସୀନ, ମାଙ୍ଗଳୀ ପ୍ରବେଶ]

ମାଙ୍ଗଳୀ—[ପ୍ରଣତହୋଇ କରଯୋଡ଼ି] ନମୋ ବ୍ରାହ୍ମଣ୍ୟ ଦେବାୟ ।

ବିଶ୍ୱାମିତ୍ର—ମଙ୍ଗଳାନ୍ନ ହଉ-ମାଙ୍ଗଳୀ, ତୁମ୍ଭର ମୁର୍ଖତା ଦିନକୁ ଦିନ ବଢ଼ୁଛି । ମୁଣ୍ଡରେ ହାତଦେଇ ବର୍ତ୍ତମାନ ଓଳ୍ପ ପର ବସିଥିଲ କାହିଁକି ? ମୁଁ ବାରମ୍ବାର କହୁଅଛି ହୃଦୟକୁ ବିଶେଷ କଠୋର କରିବ । ହରିଶ୍ଚନ୍ଦ୍ରର ଦୁଃଖ ଦେଖି ସ୍ୱୟଂ କାତର ହେବନାହିଁ ।

ମାଙ୍ଗଳୀ—ହୋହୁ ମହାରାଜ ! ମୋର ଅପରାଧ କ୍ଷମାକରନ୍ତୁ-ରାଣୀଙ୍କର ରୋଦନ ବିଶେଷତଃ ସେହି ଅଜ୍ଞାନ ବାଳକଟିର ରୋଦନ ହୋଇ ହେଲା ଯେପରି କି ପଥରଖଣ୍ଡ, ଗ୍ରୁତ-କଡ଼, କବାଟ ହଲି ଯାଉଛନ୍ତି । ମୁଁ ଭାବିଲି ଘରଗୁଡ଼ାକ ଅବ ଅବ ମୋ ଉପରେ ପଡ଼ିଯିବ । ସେଥି ସକାଶେ ମୁଁ ମୁଣ୍ଡରେ ହାତଦେଇ ଭୟରେ ବସି ଯାଇଥିଲି ।

ବିଶ୍ୱାମିତ୍ର—ମିଥ୍ୟାବାଦୀ ! ସାମାନ୍ୟ କଥାରେ ଏତେ ମିଥ୍ୟା ?

ମାଙ୍ଗଳୀ—[କରଯୋଡ଼ି] ହୋହୁ ମହାରାଜ ! କଦାପି ମିଥ୍ୟା ନୁହେଁ । ସତ୍ୟକଥା କହୁଅଛି । ଘରର କବାଟ ଖୁଣ୍ଟଗୁଡ଼ିକ ଥରିଉଠୁଥିଲି ।

ବିଶ୍ୱାମିତ୍ର—ରେ ଉନ୍ମତ୍ତ ! ସେ ସକଳ ତୋର ମନର ଭ୍ରାନ୍ତି, ଲୋକେ ଦୁଃଖରେ କାତର ହେଲେ ଗଛ-ପତ୍ର କାତର ହେଲପ୍ରାୟ ଦିଶେ । ତୁମ୍ଭେ ଲୋକେ ହୃଦୟକୁ ଦୃଢ କରିପାରୁନାହଁ, ଘର, କବାଟ, ଖୁଣ୍ଟ ପ୍ରଭୃତିର ଦୋଷ କରି ? ମୁଁ ତୁମ୍ଭଙ୍କୁ ବାରମ୍ବାର ବୁଝାଇଅଛି ଯେ ସଂସାର କ୍ଷେତ୍ରରେ ଅହଙ୍କାରଜନିତ ଅଜ୍ଞାନ କେବଳ କଷ୍ଟର କାରଣ ।

ମାଙ୍ଗଲ୍ୟ—ମହାରାଜ ! ଆପଣଙ୍କର ଉପଦେଶ ଶିରୋଧାର୍ଯ୍ୟ ! ଆପଣଙ୍କର ମାୟା ବୁଝିଅଛି, ଲୋକେ ମଧ୍ୟ ଛାତି ଟିପି ଟିପି ଦେଖିଅଛି, ଭିତରେ ଆଉ ମାଉଁସିଆ କଲିଜା ନାହିଁ, ଖଣ୍ଡେ ପଥର କିମ୍ବା ଲୌହ ଶାଳଗ୍ରାମ । କିନ୍ତୁ ବେଳେବେଳେ ଭୁଲିଯାଉଅଛି ।

ବିଶ୍ୱାମିତ୍ର—ତୁମ୍ଭଙ୍କୁ ବର୍ତ୍ତମାନ ମୋର ଶେଷ ଆଦେଶ ପାଳନ କରିବାକୁ ହେବ । ଦୁଷ୍ଟବୁଦ୍ଧି ରାଜମନ୍ତ୍ରୀ ଗଲ୍ପ, କୌଶଳରେ ଆସି ସପ୍ତକୋଟି ସୁବର୍ଣ୍ଣମୁଦ୍ରା ପ୍ରଦାନକରି ହରିଶ୍ଚନ୍ଦ୍ରଙ୍କୁ ପତ୍ନୀପୁତ୍ର ସହିତରେ ଜଣେ ଅଧୀନ ଲୋକଦ୍ୱାରା କ୍ରୟ କରିବାକୁ ପ୍ରୟାସୀ ହୋଇଅଛି । ସ୍ଥୂଳବୁଦ୍ଧି ବ୍ୟକ୍ତି ମୋର ଧ୍ୟାନବଳର ମାହାତ୍ମ୍ୟ ବୁଝିନାହିଁ । ଅଳ୍ପକ୍ଷଣମଧ୍ୟରେ ତାହାର ଉଦ୍ଦେଶ୍ୟ ବିଫଳ କରିବି । ଅତି ଶୀଘ୍ର ବିପଣୀକୁ ଯାଇ ଜଣେ ବୃଦ୍ଧ ବ୍ରାହ୍ମଣଙ୍କୁ କେବଳ ତିନକୋଟି ସୁବର୍ଣ୍ଣମୁଦ୍ରା ଦେଇ ରାଣୀଙ୍କୁ କ୍ରୟ କରିବାକୁ ଉପଦେଶ ଦେବ ।

ମାଙ୍ଗଲ୍ୟ—ଯେ ଆଜ୍ଞା—

ବିଶ୍ୱାମିତ୍ର—ଏ କାର୍ଯ୍ୟରେ ତୁମ୍ଭଙ୍କୁ କିମ୍ବା ମୋତେ ଆଉ ବିଶେଷ ପରିଶ୍ରମ କରିବାକୁ ପଡ଼ିବନାହିଁ । [ପ୍ରସ୍ଥାନ]

ମାଙ୍ଗଲ୍ୟ—ରକ୍ଷାକରନ୍ତୁ । ଓଃ ପୃଥିବୀ ସ୍ଥିରୋଭବ । [ପ୍ରସ୍ଥାନ]

[ପଟକ୍ଷେପଣ]



# ଚତୁର୍ଥ ଦୃଶ୍ୟ

## [ବାରାଣସୀ ବିପଣୀ -ନାଗରିକବୃନ୍ଦ]

[ ରାଜା—ରାଣୀ, ରୋହିତାଶ୍ୱ ପ୍ରବେଶ ]

ରାଜା—[ନାଗରିକମାନଙ୍କପ୍ରତି]

ଶୁଣ ନାଗରିକବୃନ୍ଦ ଶୁଣ ହେ ସରବେ
ବିଶୁଦ୍ଧ କ୍ଷତ୍ରିୟକୁଳେ ଜନମାଇ ବିଧି
ପ୍ରେରିଛି ଦାରୁଣକାର୍ଯ୍ୟେ, ଚଣ୍ଡାଳ ଅଧମ
ମୂର୍ଦ୍ଧ, ମୁନି ବିଶ୍ୱାମିତ୍ରେ କରି ଅଙ୍ଗୀକାର ପ୍ରଦାନ
ଦାନ ଦକ୍ଷିଣାପ୍ରଦାନେ ଅସମର୍ଥହୋଇ
ଆସିଛୁ ଏ ସ୍ଥାନେ ଆଜି ବିକ୍ରୟ କରିବ
ପଦ୍ମାଳୟା ସମ ପତ୍ନୀ ପ୍ରିୟ ପ୍ରିୟମ୍ବଦା,
ଲକ୍ଷ୍ମୀବନ୍ତ ସାଧୁବୃନ୍ଦ ଥାଏ ଯଦ ଇଚ୍ଛା
ଆସ ହେ ଅତରେ ଦାନ ଉପଯୁକ୍ତ ମୂଲ୍ୟେ
କିଅ ଏ ରତନେ ବିଶ୍ୱ ଦୁର୍ଲ୍ଲଭ ରମଣୀ

[ସ୍ୱଗତ] ହୃଦୟ ବିଦୀର୍ଣ୍ଣହେଲା ଜ୍ୱଳିଲା ଅନଳ
ବାକ୍ୟ ନସ୍ଫୁରଇ ଆଉ ରୁଦ୍ଧଶ୍ୱାସ କଣ୍ଠ
ଶୁଷ୍କହେଲା ଓଷ୍ଠ, ତାଳୁ, ପାତକୀ ରସନା ।

[ମୂର୍ଚ୍ଛାବେଗରେ ପତିତହେବା ସମୟରେ ନାଗରିକମାନଙ୍କଦ୍ୱାରା ଧୃତ]

ଜନୈକନାଗରିକ—

କିଏ ତୁମ୍ଭେ ଭାଗ୍ୟହୀନ ବିଧି ବିତାଡିତ
ନୃପତି ଲକ୍ଷଣଯୁକ୍ତ ଆସିଛ ଏ ସ୍ଥାନେ
କି ପାଇଁ ବା ଲକ୍ଷ୍ମୀରୂପୀ ପ୍ରିୟା ଅର୍ଦ୍ଧାଙ୍ଗିନୀ
ବିକ୍ରୟେ ପ୍ରୟାସୀହେ ଇ ମୋହଆବରଣେ

ପ୍ରକଷ୍ଟ ହେଉଛ ଅନ୍ଧ ବାତୁଳ ପରାୟେ;
ଯାଅ ଗୃହେ ପୁଲ୍କମନେ ପତ୍ନୀସଙ୍ଗେ ଧୀରେ
ଥାଏ ଯଦ ଇଚ୍ଛା ତବ, ପାଳିବ ଯତନେ
ହୃଦୟରତନ ତାହା ସୁକୁମାର ଶିଶୁ;
ଆଶ୍ୱସ୍ତ ହୁଅ ହେ ସାଧୁ, କୃପାମୟ ହରି
ଦିଅନ୍ତୁ ହୃଦୟେ ଶାନ୍ତି ପରମ ଆନନ୍ଦ;

ରାଣୀ— ଦୟାମୟ ସର୍ବସାକ୍ଷୀ ନାରାୟଣ ହରି
କରନ୍ତୁ ମଙ୍ଗଳ ତବ, ସୁମିଷ୍ଟ ବଚନେ
ଉତ୍ସାହିତ ପତି ମୋର ପାଳିବେ ସକଳ
ଅର୍ଦ୍ଧାଙ୍ଗିନୀ ମୁହିଁ କି ସୁଖେ ଯାପିବି ଦିନ
ପ୍ରିୟ ପ୍ରାଣପତି ଯଦି ପଡ଼ିବେ ନରକେ;
ବ୍ରାହ୍ମଣ ହରଣେ ପ୍ରତିଶ୍ରୁତି ସ୍ୱର୍ଣ୍ଣ
ନ ଲଭିଲେ ବିଶ୍ୱାମିତ୍ର କୁପିତ ହୋଇବେ,
ଅଭିଶାପେ ଅଧୋଗତି ହେବ ସନ୍ଧ୍ୟାଗମେ,

ବୃଦ୍ଧ ବ୍ରାହ୍ମଣ—ରୂପବତୀ ପତ୍ନୀତବ ସୁଲକ୍ଷଣା ପ୍ରାୟେ
ଦାସୀ ଉପଯୁକ୍ତ ବୋଲି ଦିଶୁଛି ନୟନେ
ପତ୍ନୀ ମୋର ସୁକୁମାରୀ ନବୀନ ଯୌବନା
ଗୃହକର୍ମ ପରିଶ୍ରମେ ହେଲଣି କାତରି
ଦୁର୍ବଳ ଦିଶଇ ଏହି ରୂପବତୀ ନାରୀ
ଆହାର ଲଭିଲେ କ୍ରମେ ହୋଇବ ବଳିଷ୍ଠ

ରାଜା— ଆପତ୍ତି ନାହିଁ ହେ ବିପ୍ର ଯଦି ଏ ରମଣୀ
ଦାସୀରୂପେ ରହେ ତବ ପବିତ୍ର ସଦନେ ।

ବୃଦ୍ଧ—ତିନିକୋଟି ସୁବର୍ଣ୍ଣମୁଦ୍ରା ବିନିମୟରେ ଏହି ଦାସୀକୁ ଆମ୍ଭେ କ୍ରୟକରିବାକୁ ଇଚ୍ଛା କରୁଅଛୁ । ଏହାଠାରୁ ଅଧିକ ଅର୍ଥ ପ୍ରଦାନ

କରିବାକୁ ଅକ୍ଷମ । ତୁମ୍ଭେ କେତେ ଦରରେ ବିକ୍ରୟ କରିବାକୁ ଇଚ୍ଛାକର ?

ରାଜା—ମହାଶୟ ! କୌଣସିକାଳରେ କୌଣସି ଦ୍ରବ୍ୟ ଆମ୍ଭେ ବିକ୍ରୟ କରିନାହୁଁ । ଅଦୃଷ୍ଟ ଦୋଷରୁ ଆଜି ଆମ୍ଭଙ୍କୁ ଜୀବନର ସର୍ବଶ୍ରେଷ୍ଠ ଜୀବନକୁ ବିକ୍ରୟ କରିବାକୁ ପଡ଼ିଲା । ଏହି ଦାରୁଣ ଦୁଃଖଉପରେ ଦର କରିବା ଦୁଃଖ ଓ ଅପମାନ, ମୋର ହୃଦୟକୁ ଆକୁଳ କରୁଅଛି, ବାକ୍ୟ ସ୍ଫୁରୁନାହିଁ, କଣ୍ଠ ଓ ଓଷ୍ଠ ଶୁଷ୍କ ହେଲାଣି । ଦଣ୍ଡାୟମାନ ହେବାକୁ ଆଉ ବଳନାହିଁ । [ଅଧୋମୁଖେ ଉପବେଶନ]

ରାଣୀ—ମହାରାଜ ! ବାରମ୍ବାର ଅଧୀରହେବା ଭଲ ନୁହେଁ । ଶୀଘ୍ର ବାକ୍ୟ ଉଚ୍ଚାରଣ କରନ୍ତୁ । ବିଶ୍ୱାମିତ୍ର ମୁନି ବାକି ଦଶକୋଟି ସୁବର୍ଣ୍ଣମୁଦ୍ରା ନ ପାଇଲେ ଆପଣଙ୍କୁ ଏକାନ୍ତ ନିଃସହାୟ ଦେଖି, ଦୟାକରି କ୍ଷମାକରିବେ । ବ୍ରାହ୍ମଣ ଘରେ ଦାସୀକାର୍ଯ୍ୟ କଲେ ମୋର ବିଶେଷ ମାନହାନି ହେବନାହିଁ । ଅତଏବ ଶୀଘ୍ର ଦଶକୋଟି ସୁବର୍ଣ୍ଣମୁଦ୍ରା ଗ୍ରହଣକରି ଆମ୍ଭଙ୍କୁ ପ୍ରଦାନ କରନ୍ତୁ ।

ରାଜା—ମୋର କୌଣସି ଆପତ୍ତି ନାହିଁ ତୁମ ! [ରାଣୀଙ୍କ ଦେହରେ ନିଜ ଯଷ୍ଟିକୁ ସ୍ପର୍ଶକରି] ଆସ, ଆଉ ବିଳମ୍ବ କରନାହିଁ । ବିଦାୟ ବିଦାୟ, କାନ୍ଦଣା, କେଁ କଟର ମୋତେ ଭଲ ଲାଗେନାହିଁ ।

ରାଣୀ—ପ୍ରଭୋ ! ଯେଉଁ ପ୍ରାଣପତି ମୋର ଗ୍ଥର ଜୀବନ ସକାଶେ ଦୟାଗ୍ରସ୍ତ ଚିନ୍ତିତ ଅଛନ୍ତି, ଯାହାଙ୍କର ପ୍ରେମବନ୍ଧନ ମୃତ୍ୟୁରେ ମଧ୍ୟ ବିଚ୍ଛିନ୍ନ ହୋଇପାରିବ ନାହିଁ, ତାଙ୍କ ଶ୍ରୀଚରଣରୁ ଦଣ୍ଡେମାତ୍ର ବିଦାୟ ନେବି, ଅନୁମତି କରନ୍ତୁ ।

ରାଜା—ପ୍ରିୟେ ! ତୁମ୍ଭର ନୂତନ ପ୍ରଭୁ ଏହି ବିପ୍ରଙ୍କ ନିକଟରେ ବିନୀତା ଦାସୀପ୍ରାୟ ବ୍ୟବହାର କରିବା କର୍ତ୍ତବ୍ୟ, କିନ୍ତୁ ମୋର ହୃଦୟ

ସହସ୍ର ଚକ୍ଷୁରୁକାଢ଼ାଗ କର୍ଷିତ ହେଉଅଛୁ । ଅଯୋଧ୍ୟାର ମହାରାଣୀ ଆଜ କୀତଦାସୀ । ଆଜ ସେ ବଣୀତସ୍ବରରେ ହାତଯୋଡ଼ି ବଜାର ମଧ୍ୟରେ ଠିଆ ହୋଇଅଛନ୍ତି, ତାହାଙ୍କର ଷଣ୍ଡିସ୍ତ ଅଧମ ପଶୁ ରାକ୍ଷସ ପ୍ରାୟ-ଓ ହୋ ! ଓହୋ ! ହୃଦୟରେ ଅଗ୍ନିଶିଖା-କଣ୍ଠରେ ଅଗ୍ନିଶିଖା-ରସନାରେ ଅଗ୍ନିଶିଖା-ଦେବ ! ଶୀଘ୍ର ଯାଅ, ଶୀଘ୍ର ଯାଅ, ହୃଦୟର ତାପହାରକ ବସନ୍ତ ଚନ୍ଦ୍ରମା ତୁଲ୍ୟ ତୁମ୍ଭର ସେହି ମୁଖକୁ ଆଉ ଦେଖିପାରିବ ନାହିଁ । [ମୁଖରେ ବସ୍ତ୍ରଦେଇ ଅନ୍ୟ ଦିଗକୁ ଗମନ] ଦେବ ! ଦେବ ! ସତ୍ୟ, ସତ୍ୟ . ଯଦି ତୁମ୍ଭେ ଏହି ଅଧମ ସୂର୍ଯ୍ୟବଂଶର କଳଙ୍କସ୍ୱରୂପ ନୃଶଂସ ପିଶାଚକୁ ପରିତ୍ୟାଗକରି ଯାଉଅଛ, ତା ହେଲେ ତୁମ୍ଭଙ୍କୁ ଥରେ ଆଲିଙ୍ଗନ କରିବି ।

(ହସ୍ତ ପ୍ରସାରଣ ସମୟରେ)

ରାଣୀ—ମହାରାଜ ! ଧର୍ମଜ୍ଞ ହୋଇ ନୀତିବିରୁଦ୍ଧ କାର୍ଯ୍ୟ କରିବେନାହିଁ । ମୁଁ ଆଉ ରାଣୀ ନୁହେଁ, ସାମାନ୍ୟ ପଶୁପ୍ରାୟ ଜଣେ କୀତଦାସୀ ମାତ୍ର । ମୋତେ ଛୁଇଁବନାହିଁ । ଆପଣଙ୍କ ଦେହଶରୀର ଅପବିତ୍ର ହେବ ।

ରାଜା—ତାହାହେଲେ କଣ ସତ୍ୟ, ସତ୍ୟ ଏହି ନରାଧମର ଶେଷ ସୁଖସ୍ବପ୍ନ ଶେଷ ହୋଇଅଛି ।

ରୋହିତାଶ୍ୱ—ମା, ମା, ତୁମ୍ଭେ କୁଆଡ଼େ ଯାଉଛ ? ବାପା କୁଆଡେ ଯାଉଛନ୍ତି ? ମତେ ଛାଡ଼ିଯିବନାହିଁ, ମୁଁ ତୁମ୍ଭ ସଙ୍ଗରେ ଯିବି ।

[ମାତାଙ୍କୁ ଆଲିଙ୍ଗନ କରି ରୋଦନ]

ବୃଦ୍ଧ—ରେ ରେ ବାଳକ ! ଦେ, ତୋ ମା'କୁ ଛାଡ଼ି ଦେ, ମୁଁ ତୋତେ ନେଇପାରିବନାହିଁ । ତୋଦ୍ୱାରା କଡ଼ାକର କାମ ହେବନାହିଁ ।

ରୋହିତାଶ୍ୱ—[କ୍ରୋଧରେ] ମୋ ଇଚ୍ଛା ! ମୁଁ କେବେ ଛାଡ଼ିବନାହିଁ, ମା'କୁ ଛାଡ଼ିବନାହିଁ ।

ବୃଦ୍ଧ—ଛାଡ଼ିବୁ ତ ଛାଡ଼, ନଇଲେ ଏଇ ଲାଠିରେ ।

[ପ୍ରହାରକରିବା କାଳରେ]

ରାଣୀ—[ପ୍ରହରୀକୁ ନିଜ ହାତରେ ଅଡ଼େଇଦେଇ] ପ୍ରଭୋ ! ଆପଣଙ୍କର ପିଲାବାଳକ ଥିବେ । ମା'ଙ୍କୁ ଛାଡ଼ି ବାଳକଟି କପରି ରହିବ, ଅନୁମତି- କରନ୍ତୁ, ସେ ମୋ ସଙ୍ଗରେ ରହିବ ।

ବୃଦ୍ଧ—ଭଲ କଥା, ଖୋରାକର ଫେର୍ ମୂଲ୍ୟ ଅଛି ତ ?

ରାଣୀ—ମୋହର ଆହାରକୁ ଦୁଇଭାଗରେ ବିଭକ୍ତକରି ପୁଅକୁ ଏକଭାଗ ଦେବି ।

ବୃଦ୍ଧ—ଆଚ୍ଛା ହେଉ, ତୁମ୍ଭର ପୁଅ ଦେବସେବାରେ ନିଯୁକ୍ତହୋଇ ଫୁଲ ତୋଳିବ । ତୁମେ ମୋର ପଛେ ପଛେ ଆସ ।

ରାଣୀ—[ହରିଶ୍ଚନ୍ଦ୍ରଙ୍କ ନିକଟରେ ଉପବେଶନ କରି] ମହାରାଜ ଶ୍ରୀଚରଣରୁ ବିଦାୟ ହେଲି ।

[ଶୋକଭରେ ଗୀତ]

କେ ନେଲା ଚନ୍ଦ୍ରମା ମୁଖୁଁ ବିମଳ ଜ୍ୟୋତ୍ସ୍ନା ଶିଖା
ତବ ବିନୁ ପ୍ରାଣନାଥ ରହିବି ମୁଁ ଅନ୍ଧପରି,
ତବଯୋଗେ ସୁଧାଝରେ
କୁସୁମରେ ଆକାଶରେ
ଘୋଟେ ଏବେ ହୃଦାକାଶେ ନିବିଡ ତମ ବିଭାବରୀ । ୧ ।
କି ରୂପେ କାଟିବି ଦିନ
ସରିଛି ସୁଖ ସ୍ୱପନ
ତେଜିବି ଏହି ଜୀବନ ତବଗୁଣ ଝୁରି ଝୁରି । ୨ ।

[ବିପ୍ର, ରାଣୀ, ରୋହିତାଶ୍ୱର ପ୍ରସ୍ଥାନ]

ରାଜା—ହେ ନାରାୟଣ ! ବିଶ୍ୱବ୍ୟାପୀ ମହାଚୈତନ୍ୟ ! ମୋର ହୃଦୟ ସିଂହାସନରେ ଅବସ୍ଥାନ କର ! ଯେଉଁ ହୃଦୟକୁ ସଂସାରର ମାୟା ଘୋଟି ରହିଥିଲା, ସେ ହୃଦୟ ବର୍ତ୍ତମାନ ଶୂନ୍ୟ । ଯେଉଁ ହରିଶ୍ଚନ୍ଦ୍ର

ଏକ ସମୟରେ ରାଜପ୍ରାସାଦରେ ବସି କୋଟିକୋଟି ନରନାରୀ-ମାନଙ୍କର ଅଧୀଶ୍ୱର ଥିଲି, ଆଜି ସ୍ୱୟଂ କଂସାଇଠାରୁ ସ୍ୱାନ ହୋଇ ନିଜର ପ୍ରାଣପ୍ରିୟାଙ୍କୁ ବିକ୍ରୟ କରିଅଛି । ଏହି ହୃଦୟ କେଉଁ ଉପାଦାନରେ ନିର୍ମିତ ବୁଝି ହେଉନାହିଁ ।

[ଭୂମିରେ ଲେଟି ମୁଖରେ ଅଞ୍ଚଳ ଦେଇ ରୋଦନ, ମାଙ୍ଗଳୀ ଓ ବିଶ୍ୱାମିତ୍ରଙ୍କର ପ୍ରବେଶ]

ବିଶ୍ୱାମିତ୍ର—କହୋ ହରିଶ୍ଚନ୍ଦ୍ର ! ତୁମ୍ଭେ ଯଦି ଦକ୍ଷିଣା ନ ଦେବ, ଶୀଘ୍ର ସ୍ୱୀକାର କର-ଦେଇପାରିବ ନାହିଁ ।

ରାଜା—[ଉତ୍‌ଥିତହୋଇ] ପ୍ରଭୋ ! ଦଶକୋଟି ସୁବର୍ଣ୍ଣମୁଦ୍ରା ଏହି ସ୍ଥାନରେ ପ୍ରସ୍ତୁତ ହୋଇଅଛି, ଗ୍ରହଣ କରନ୍ତୁ ।

ମାଙ୍ଗଳୀ—ଏ କ'ଣ ଅଜ୍ଞାକଥା ପଢ଼ୁଛ ? ସପ୍ତକୋଟି ସୁବର୍ଣ୍ଣମୁଦ୍ରା ନ ଦେଲେ ଏହିକ୍ଷଣି ଅଭିଶାପଦ୍ୱାରା ନରକଗାମୀ ହେବ ।

ରାଜା—ପ୍ରଭୋ ! ଏହି ଜୀବନରେ ଆଉ ପ୍ରୟୋଜନ ନାହିଁ । ଅବଶିଷ୍ଟ ସ୍ୱର୍ଣ୍ଣ ସକାଶେ ମୁଁ ନିଜକୁ ଆପଣଙ୍କଠାରେ ସମର୍ପଣ କରୁଅଛି ।

ବିଶ୍ୱାମିତ୍ର—ଉତ୍ତମ ବିଚାର କରିଅଛ ?

ରାଜା—ସ୍ତ୍ରୀ, ପୁତ୍ର ବିହୀନ ହୋଇ ଏହି ଜୀବନ ଏକ ମୁହୂର୍ତ୍ତ ରହିବାର ଉପଯୁକ୍ତ ନୁହେଁ । କେବଳ ଦାୟରୁ ଶୀଘ୍ର ମୁକ୍ତ ନ ହେଲେ ପାପଜଡ଼ିତ ହୋଇ ରହିବାକୁ ହେବ । ସେଥିସକାଶେ ମୁଁ ଆପଣଙ୍କଠାରେ ଆତ୍ମସମର୍ପଣ କଲି ।

ବିଶ୍ୱାମିତ୍ର—ଉତ୍ତମ କଥା । ମୋର ଅର୍ଥର ପ୍ରୟୋଜନ । ଆପଣଙ୍କ ପ୍ରାୟ ଅକର୍ମଣ୍ୟ ଭୃତ୍ୟର ଆବଶ୍ୟକ ନାହିଁ । ମାଙ୍ଗଳୀ ! ଏହି ଦେଖ, କିୟଦ୍ଦୂରରେ ଜଣେ ଧନଶାଳୀ ଚଣ୍ଡାଳ ଦଣ୍ଡାୟମାନ ହୋଇଅଛି । ତାହାକୁ ଏହିଠାକୁ ଶୀଘ୍ର ଡାକିଦିଅ ।

[ମାଙ୍ଗଳୀର ପ୍ରସ୍ଥାନ ଏବଂ ଚଣ୍ଡାଳ ସହିତ ପୁନଃ ପ୍ରବେଶ]

ଚଣ୍ଡାଳ—[ପ୍ରଣାମପୂର୍ବକ] ମୁଁ ଉଚିତ ମୂଲ୍ୟ ଦେବ । ଆପଣ ହରିଆଙ୍କୁ ମୋତେ ବନ୍ଦବସ୍ତ କରନ୍ତୁ ।

ବଶିଷ୍ଠମିଶ୍ର—ମାଙ୍ଗଲ୍ୟ । ତୁମ୍ଭେ ଏହି ଚଣ୍ଡାଳଠାରୁ ମୂଲ୍ୟ ଗ୍ରହଣ କର । ହରିଶ୍ଚନ୍ଦ୍ର ଦକ୍ଷିଣାରୁ ଏବେ ମୁକ୍ତ ହେଲେ । ଚଣ୍ଡାଳର କ୍ରୀତଦାସ-ହୋଇ ପ୍ରସ୍ଥାନ କରନ୍ତୁ ।

ରାଜା—ଆପଣଙ୍କଠାରେ ଆତ୍ମସମର୍ପଣ କରିଥିବା ସ୍ଥଳରେ ଆପଣଙ୍କର ସମ୍ପୂର୍ଣ୍ଣ ଅଧିକାର ଅଛି, ମୋତେ ବନ୍ଦବସ୍ତ କରିପାରିବେ । ଆଦେଶ ଶିରୋଧାର୍ଯ୍ୟ କରି ମୋର ଏହି ନୂତନ ଚଣ୍ଡାଳ ପ୍ରଭୁଙ୍କ ସହ ଗମନ କରିବ ।

[ମାଙ୍ଗଲ୍ୟ, ବଶିଷ୍ଠମିଶ୍ରଙ୍କର ପ୍ରସ୍ଥାନ]

ଚଣ୍ଡାଳ—ଦେଖ୍ ହରିଆ ! ତୁ ଯଦି ଭଲକାମ କରିପାରିବୁ, ହଇରାଣ ନ କରିବୁ, ତାହେଲେ ଅଳ୍ପଦିନ ମଧ୍ୟରେ ତୋର ଉନ୍ନତି କରିଦେବି । ପ୍ରଥମେ ଘୁଷୁରି ଚରାଇବାକୁ ହେବ । ସେଥିରେ ପ୍ରଶଂସା ପାଇଲେ ଶ୍ମଶାନରେ ରାଜସ୍ୱ ଆଦାୟ କରିବୁ । ମୋର ଅନେକ ଗୁଣ୍ଡିକର ଅଛନ୍ତି, ସମସ୍ତେ ସେହି ଗୁଣ୍ଡିକରାଖଣ୍ଡିକ ଆବୁରୁଛନ୍ତି । ମଡ଼ା ପୋଡ଼ ହେବା ସମୟରେ ଅନେକ ପନ୍ଥାବଳୀପତ୍ର ମିଳେ, ମନଇଚ୍ଛା ଭୋଜନ କରିବୁ । ବାକି ସବୁ ଖରକରି ମୋ ଘରକୁ ପଠାଇଦେବୁ । ଚାଲ—

[ଉଭୟଙ୍କର ପ୍ରସ୍ଥାନ]

[ପଟକ୍ଷେପଣ]



# ପଞ୍ଚମ ଅଙ୍କ

## [ପ୍ରଥମ ଦୃଶ୍ୟ]

### କକ୍ଷ

[ବ୍ରାହ୍ମଣୀ ଓ ଶୈବ୍ୟା]

ବ୍ରାହ୍ମଣୀ—ଓଃ ଦେହ ଅସୁସ୍ଥହେଲେ ଖାଇବାର ସୁଖ ନାହିଁ, ପିନ୍ଧିବାର ସୁଖ ନାହିଁ, ଲଗାଇବାର ସୁଖ ନାହିଁ । ତୁମକୁ ନ ଆଣିଥିଲେ ମୁଁ ଚଳିପାରି ନ ଥାନ୍ତି । ମନଦେଇ କାମ କରୁଥିବ, ତୁମର ଉନ୍ନତି କରିଦେବି, ତୁମ ପୁଅର ଉନ୍ନତି କରିଦେବି ।

ଶୈବ୍ୟା—କର୍ତ୍ତବ୍ୟ କର୍ମରେ ହେଳାକଲେ ପାପଭାଗୀ ହୁଅନ୍ତି । ଏ କଥାଟି ମୁଁ ପିଲା ବୟସରୁ ଶିକ୍ଷା କରିଅଛି । ଆପଣ ନିଶ୍ଚିନ୍ତ ହୁଅନ୍ତୁ, ମୁଁ ସବୁକାମ କରିଦେବି ।

ବ୍ରାହ୍ମଣୀ—ଉତ୍ତମକଥା, ତୁମ୍ଭର କଥାଗୁଡ଼ିକ ସୁମିଷ୍ଟ । କୌଣସି ବଡ଼ଲୋକ ଘରେ ବଢ଼ିଥିଲ କି ?

ଶୈବ୍ୟା—ମୋର କପାଳ ପୋଡ଼ି ଯାଇଅଛି । ସେ ସକଳ କଥା ପଚାରିବେ ନାହିଁ ।

ବ୍ରାହ୍ମଣୀ—ସ୍ୱାମୀ ସହିତ ବିବାଦ କରିଥିଲ କି ? [ଅନ୍ୟଦିଗ ମନୋନିବେଶନ]

ଶୈବ୍ୟା—ନା, ସ୍ୱାମୀ ମୋର ଚିରକାଳ ପୂଜ୍ୟଦେବତା ଥିଲେ ଏବଂ ଅଛନ୍ତି । ମୁଁ ଯାଉଛି, ଅନ୍ୟତ୍ର କାମ ଅଛି ।

ବ୍ରାହ୍ମଣୀ—ତୁମ ପୁଅ ସକାଶେ ମୁଁ ଏହି ବନ୍ଦୋବସ୍ତ କରିଅଛି ଯେ ଦେବମନ୍ଦିରରେ ଅନେକ ପୁଷ୍ପ ଓ ବେଲପତ୍ର ପ୍ରୟୋଜନ ହୁଏ ।

କେତେଗୁଡ଼ିଏ ବାଳକ ନିଯୁକ୍ତ ଅଛନ୍ତି, ସେ ମଧ୍ୟ ସେମାନଙ୍କ ସଙ୍ଗରେ ରହି କାର୍ଯ୍ୟ କରିବ । ତାହାହେଲେ ଅଲଗା ଖୋରାକି ମିଳିବ । ତୁମ୍ଭର ଖୋରାକକୁ ଭାଗଦେଲେ ତୁମ୍ଭେ ଶୁଖିଯିବ, କାମ କରିପାରିବନାହିଁ ।

ଶୈବ୍ୟା—ନା' ତା ନୁହେଁ, ପୁଅ ମୋର ଦରଖିଆ ହେଲେ ମୁଁ ଶୁଖିଯିବି । ଆପଣ ଫୁଲ ତୋଳିବାକୁ ଯେ ବନ୍ଦୋବସ୍ତ କରିଛନ୍ତି, ତହିଁରେ ମୁଁ ସନ୍ତୁଷ୍ଟ ।

ବ୍ରାହ୍ମଣୀ—ଯାଅ, କି କାମ କରିବ ଯାଅ ।

ଶୈବ୍ୟା—ଗୋଟିଏ କଥା ପଚ୍ଚାରନ୍ତି, ପୁଅ ମୋର ଫୁଲ ତୋଳିବ, ଅରଣ୍ୟକୁ କ'ଣ ଯିବାକୁ ହୁଏ ?

ବ୍ରାହ୍ମଣୀ—ଦରକାର ପଡ଼ିଲେ ପିଲମାନେ ଯାଆନ୍ତି, ତା ନ ହେଲେ ବଗିଚାରେ ଢେର ଫୁଲ ଥାଏ ।             [ବ୍ରାହ୍ମଣୀର ପ୍ରସ୍ଥାନ]

ଶୈବ୍ୟା—[ସ୍ୱଗତ] ଜୀବନର ଦୁଃଖରାଶିକୁ ଏକାଠି କରି ଯଦି ଗୋଟିଏ ଗୋଟିଏ ବିଷବୃକ୍ଷ ଭାଳି ବସିବି, ତା'ହେଲେ କାନ୍ଦିବାକୁ ଏହି ଚକ୍ଷୁ ଦୁଇଟି ନଅଣ୍ଟ । ମରିବାକୁ ଏହି କ୍ଷୁଦ୍ର ମନୁଷ୍ୟ ପ୍ରାଣ ମଧ୍ୟ ନଅଣ୍ଟ ହେବ; କିନ୍ତୁ ମୋ ପ୍ରାଣ ବିଧାତା କି ଧାତୁରେ ନିର୍ମିତ କରିଛି ବୁଝି ପାରୁନାହିଁ । ହାୟ ! ହାୟ !! ସ୍ୱାମୀଙ୍କର ସେହି ଦାରୁଣ ଦୁଃଖ-ତାହାଙ୍କର ସେହି ଦୁର୍ବଳ ଦେହ-ତାହାଙ୍କର ସେହି ମଧୁର ଶୁଷ୍କମୁଖ ବାରମ୍ବାର ମନରେ ପଡ଼ୁଛି । ହେ ଜୀବନ ବନ୍ଧୋ ! ହେ କରୁଣାସାଗର ପରମପୁରୁଷ ! ଅନାଥର ନାଥ ଦୀନନାଥ ! ହେ ମହାମହିମ ବିଶ୍ୱମ୍ଭର ! ମୋର ଅହଙ୍କାର ଚୂର୍ଣ୍ଣୀଭୂତ ହୋଇଅଛି । ଏବେ ମୋତେ ତୁମ୍ଭ ପାଦପଦ୍ମରେ ଶରଣ ଦିଅ । ଆଉ ମୋର ହସ୍ତପଦର ସ୍ପନ୍ଦନ ନାହିଁ ।             [ଶୈବ୍ୟାଙ୍କର ପ୍ରସ୍ଥାନ]

[ପଟ୍ଟକ୍ଷେପଣ]



[ଦ୍ୱିତୀୟ ଦୃଶ୍ୟ]

# ଉପବନ

[ବାଳକଗଣ, ଶ୍ୱେତାଶ୍ୱ]

ମଧୁ—ଗୋବନ୍ଦ ମନ୍ଦାରଫୁଲ ତୋଳିବ ।

ଗୋବନ୍ଦ—ଗୋପାଳ ତୋଳିବ ବଣମଲ୍ଲୀ । ମୁଁ ଗଛଉପରେ ଚଢ଼ି କଦମ୍ବଫୁଲ ତୋଳିବ ।

ଶ୍ରୀଧର—ଆସ ଆସ ବେଗେ ଆସ କିଏ କେତେ ଫୁଲ ତୋଳିବ, ଅଲଗା ଅଲଗା ରଖିବ ।

ମାଧବ—[ନେପଥ୍ୟକୁ ଚାହିଁ] ଦେଖୁଛନା, ଆଉଜଣେ ଆସିଲାଣି ।

[ଶ୍ୱେତାଶ୍ୱ ଓ ରାଣୀଙ୍କର ପ୍ରବେଶ]

ରାଣୀ—ବାବା, ଫୁଲ ତୋଳିବୁ, କାହାର ସଙ୍ଗରେ କଜିଆ କରିବୁନାହିଁ ।

ମଧୁ—[ଶ୍ୱେତାଶ୍ୱ ସ୍କନ୍ଧରେ ହାତରଖି] ମୁଁପରା କହୁଥିଲି, ତୋତେ ଫୁଲ ତୋଳିବା ପାଇଁ ଗୁରୁ ନିଶ୍ଚୟ ପଠାଇବେ ।

ଶ୍ୱେତାଶ୍ୱ—ମା' ! ତୁମ୍ଭେ ଯାଅ, ମୁଁ ଫୁଲ ତୋଳିବ ।

[ରାଣୀଙ୍କର ପ୍ରସ୍ଥାନ]

ଗୋବନ୍ଦ—[ଶ୍ୱେତାଶ୍ୱକୁ ଧରି] ମୋ ସାଙ୍ଗରେ ଆସ, କଦମ୍ବଫୁଲ ତୋଳିଦେବ ।

ଶ୍ରୀଧର—ସମସ୍ତେ ଆମେ ଫୁଲ ତୋଳିବା, ଶ୍ୱେତାଶ୍ୱକୁ ଭାଗଦେବା ।

ଶ୍ୱେତାଶ୍ୱ—ମତେ ଫୁଲ ତୋଳିଆସେ, ମୁଁ କାହାରିଠାରୁ ଭାଗ ନେବନାହିଁ ।

[ହୋ ହୋ ହୋ ହୋ ଚିତ୍କାର କରି ବାଳକମାନଙ୍କର ପ୍ରସ୍ଥାନ]

[ପଟକ୍ଷେପଣ].



## [ତୃତୀୟ ଦୃଶ୍ୟ]

### [ଅରଣ୍ୟ]

ଶ୍ରୀଧର—ସମସ୍ତେ ପଛରେ ରହିଲେଣି । ଭୁ ଆଉ ଦୂରକୁ ଯିବୁନାହିଁ ।

ବେଦ୍ବତାଶ୍ବ—ସମ୍ମୁଖରେ ବେଲ ଗଛଟି ବଡ଼ ସୁନ୍ଦର ଦଶୁଛୁ । କଅଁଳ ବେଲପତ୍ର ତୋଳିବା ।

ଶ୍ରୀଧର—ମୁଁ ଯାଉଛୁ ସେ ଗଛ ମୂଳକୁ, ଭୁ ବେଲପତ୍ର ତୋଳୁଥା ।

ବେଦ୍ବତାଶ୍ବ—(ଶୃଙ୍ଗୁଡ଼ି ଧଣ) କେତେ ସୁନ୍ଦର କଅଁଳ ବେଲପତ୍ରଗୁଡ଼ିଏ ହୋଇଛୁ । (ପତ୍ରଚୟନ)

ଶ୍ରୀଧର—(ନିଜ ଶୃଙ୍ଗୁଡ଼ି ଭୂମିରେ ରଖି) ବେଶି ଦୂରକୁ ଯିବନାହିଁ, ଗୋଟିଏ ମାଳା ଗୁନ୍ଥିବି । ଭୁ ଫୁଲ ତୋଳିଆଣ-ଶୀଘ୍ର ଶୀଘ୍ର ଫେରଯିବା । ସ୍ଥାନଟି ଭାରି ନିର୍ଜନ ପରି ଲାଗୁଛୁ । (ମାଳା ରଚନା କରିବାକୁ ଉଦ୍ୟତ)

ବେଦ୍ବତାଶ୍ବ—ନା, ଏଠି ଭୟ ନାହିଁ, ନିର୍ଜନ ପରି ଲାଗୁଛୁ । ଶୀଘ୍ର ଶୀଘ୍ର ଫେରଯିବା । ଏଟା କ'ଣ ଢୁଙ୍କା ?

ଶ୍ରୀଧର—ହଁ ହଁ, ଢୁଙ୍କା ପରି ଦଶୁଛୁ ।

ବେଦ୍ବତାଶ୍ବ—ଏଠିକାଲେ ସାପ ଥିବ ?

ଶ୍ରୀଧର—କେଜାଣି ! ସାପ ଅଛୁ କି ନାହିଁ, ଆମେ କେମିତି ଜାଣିବା ।

ବେଦ୍ବତାଶ୍ବ—(ଢୁଙ୍କା ନିକଟସ୍ଥ ଉଚ୍ଚଭୂମି ଉପରେ ଠିଆହୋଇ)

"ପଶୁନାଂ ପତିଂ ପାପନାଶଂ ପରେଶଂ
ଗଜେନ୍ଦ୍ରସ୍ୟ କୃତ୍ତିଂ ବସାନଂ ବରେଣ୍ୟଂ
ଜଟାଜୂଟ ମଧ୍ୟେ ସ୍ଫୁରନ୍ ଗାଙ୍ଗବାରିଂ
ମହାଦେବ ମେକଂ ସ୍ମରାମି ସ୍ମରାରିଂ

ଗିରୀଶଂ ଗଣେଶଂ ଗଳେ ନୀଳବର୍ଣ୍ଣଂ
ଗଜେନ୍ଦ୍ରାଧିରୂଢ଼ଂ ଗୁଣାତୀତ ରୂପଂ
ଭବଂ ଭାସ୍ୱରଂ ଭସ୍ମନା ଭୂଷିତାଙ୍ଗଂ
ଭବାନୀ କଳତ୍ରଂ ଭଜେ ପଞ୍ଚବକ୍ତ୍ରଂ ।
ଶିବାକାନ୍ତ ଶମ୍ଭୋ ଶଶାଙ୍କାର୍ଦ୍ଧ ମୌଳେ
ମହେଶାନ ଶୂଳିନ୍ ଜଟାଜୂଟ ଧାରିନ୍ ।
ତ୍ୱମେକୋ ଜଗଦ୍‌ବ୍ୟାପକୋ ବିଶ୍ୱରୂପଃ
ପ୍ରସୀଦ ପ୍ରସୀଦ ପ୍ରଭୋ ପୂର୍ଣ୍ଣରୂପଃ ।
ପରାତ୍ମାନମେକଂ ଜଗଦ୍‌ବୀଜ ମାଦ୍ୟଂ
ନିରୀହଂ ନିରାକାର ମୋଂକାର ବେଦ୍ୟଂ
ଯତୋ ଜାୟତେ ପାଲ୍ୟତେ ଯେନବିଶ୍ୱଂ
ତମୀଶଂଭଜେ ଲୀୟତେ ଯତ୍ର ବିଶ୍ୱଂ ।"

ଶ୍ରୀଧର—ଦୌଡ଼ଆ ଦୌଡ଼ଆ ! ରୋହିତାଶ୍ୱ ! ତୋ ଗୋଡ଼ ପାଖରେ, ଗୋଟାଏ ସାପ ଦେଖୁନାହୁଁ ?

ରୋହିତାଶ୍ୱ—(ଚିତ୍କାରକରିବା କାଳରେ ସର୍ପଦଂଷ୍ଟ ହୋଇ ଭୂମିରେ ପଡ଼ିତ)

ଶ୍ରୀଧର—(ନେପଥ୍ୟକୁ ଚାହିଁ) ଗୋବିନ୍ଦ ! ମଧୁସୂଦନ ! ଶୀଘ୍ର ଦୌଡ଼ି ଆସ, ରୋହିତାଶ୍ୱକୁ ସାପ କାମୁଡ଼ିଲା ।

ରୋହିତାଶ୍ୱ—କ୍ରମେ କ୍ରମେ ମୋର ଜିଭ ଶୁଖି ଯାଉଛି-ପାଣି ଆଣ, ମା'କୁ ଡାକ ଦିଅ । (ଅନ୍ୟ ବାଳକମାନଙ୍କର ପ୍ରବେଶ)

ଗୋବିନ୍ଦ—ମୁଁ ଯାଉଛି, ତାର ମାକୁ ଡାକ ଦେବି । (ପ୍ରସ୍ଥାନ)

ମଧୁସୂଦନ—ମୁଁ ଯାଉଛି ପାଣି ଆଣିବି । (ପ୍ରସ୍ଥାନ)

( ବାଳକମାନଙ୍କଦ୍ୱାରା ରୋହିତାଶ୍ୱର ସେବା, ଗୋବିନ୍ଦ, ମଧୁସୂଦନ ଓ ରାଣୀଙ୍କର ପ୍ରବେଶ ।)

ରାଣୀ—(ରୋହିତାଶ୍ୱ ମୁଖରେ ଜଳ ଦେଇ କୋଳରେ ଧରି) ସତେ, ସତେ କ'ଣ ମୋର ଜୀବନ ଚନ୍ଦ୍ରମା ଅସ୍ତମିତ ହେବ ? ସତେ, ସତେ କ'ଣ ପୁତ୍ରଶୋକ ରୂପୀ ଦାରୁଣ ଅଗ୍ନି ମୋର ହୃଦୟରେ ଚିରକାଳ ଯୋଡି ରହିଥିବ ? ହାୟ ! ହାୟ ! ହାୟ ପ୍ରାଣନାଥ ! ମହାରାଜ ! କେଉଁଠାରେ ରହିଲ ? ହେ ବିଧାତା ! ଅରେ ପୁଞ୍ଚା ଆଉ କି ସାକ୍ଷାତ କରିବନାହିଁ ? (ରୋଦନ)

ଗୋବିନ୍ଦ—ଘରକୁ ନେଇଆସ ଚିକିତ୍ସା କରିବ, କାନ୍ଦୁଛ କାହିଁକି ? (ରୋହିତାଶ୍ୱକୁ କୋଳରେ ଧରି ରାଣୀଙ୍କର ପ୍ରସ୍ଥାନ, ବାଳକ ମାନଙ୍କର ପ୍ରସ୍ଥାନ ।)

[ପଟ୍ଟକ୍ଷେପଣ]

— x —

[ ଚତୁର୍ଥ ଦୃଶ୍ୟ ]

[ ଶ୍ମଶାନ ]

ହରିଶ୍ଚନ୍ଦ୍ର, ଦଣ୍ଡାଧିକାରୀ

ହରିଶ୍ଚନ୍ଦ୍ର—(ସ୍ୱଗତ) ସମ୍ମୁଖରେ ଚିତାଗ୍ନି ଧୂଧୂ ହୋଇ ପ୍ରଜ୍ଜ୍ୱଳିତ ହେଉଅଛି । ଊର୍ଦ୍ଧ୍ୱରେ ନୈଶ ଅନ୍ଧକାର ଖଣ୍ଡ ଖଣ୍ଡ କଳାମେଘଦ୍ୱାରା ଘନୀଭୂତ ହୋଇ ଚିତାଗ୍ନିର ଶିଖାରାଶିକୁ ଗ୍ରାସଣ, ଅଥ ଭ୍ରିଷଣ କରୁଅଛି । ଦୂରସ୍ଥିତ ବୃକ୍ଷଗୁଡ଼ିକ ଅନ୍ଧକାରଚ୍ଛନ୍ନ ବିସ୍ତୀର୍ଣ୍ଣ ପ୍ରେତଶରୀର ପ୍ରାୟ ହୃଦୟରେ ପେଚକମାନଙ୍କୁ ଧାରଣ କରି ପବନାନ୍ଦୋଳିତ ହୋଇ କ୍ଷଣେ କ୍ଷଣେ ଅଗ୍ନିର ଆଲୋକରଞ୍ଜିତ, କ୍ଷଣେ କ୍ଷଣେ ଗାଢ଼ ଅନ୍ଧକାରବୃତ । ଅହଙ୍କାର ରୂପ ପ୍ରଗାଢ଼ ଅନ୍ଧକାରଦ୍ୱାରା ଯେଉଁମାନଙ୍କର ହୃଦୟ ଆବୃତ ହୋଇଅଛି, ଯେଉଁମାନେ ଜନକ ଜନନୀଙ୍କର ମମତା ପାଶରେ ଆବଦ୍ଧ ଯେଉଁମାନେ ଅହଙ୍କାର ହେତୁ ଏ ସକଳକୁ ମିଥ୍ୟା ବୋଲି ବୁଝି ପାରୁନାହାନ୍ତି, ସେମାନଙ୍କ ହୃଦୟରେ ଏ ଶ୍ମଶାନ କି ଦାରୁଣ ବିଭୀଷିକା ସୃଷ୍ଟି କରି ନ ପାରେ ! ମୋର ଜୀବନ ପ୍ରଦୀପ ନିର୍ବାପିତ ପ୍ରାୟ ହୋଇଅଛି । ରାଜ୍ୟରୁ ସ୍ଖଳିତ ହୋଇ ଚଣ୍ଡାଳ ଘରେ କ୍ରୀତଦାସ ହେଲାପରେ, ଆଉ କି ମନୁଷ୍ୟ ହୃଦୟରେ ଅହଙ୍କାର ଥିବାର ସମ୍ଭାବନା ? ମନୁଷ୍ୟ ଜୀବନର ସୁଖ ଦୁଃଖ ଉଭୟ ସମାନ ଓ ତୁଚ୍ଛ, ଏ କଥା ଉପଲବ୍ଧି କରିବା ମୋ ପକ୍ଷରେ ସହଜ । ପ୍ରାଣପ୍ରିୟା ସହଧର୍ମିଣୀ ପତିବ୍ରତା ରାଣୀଙ୍କୁ ବିକ୍ରୟ କରିବା ଦିନରୁ କି ଅହଙ୍କାର, କି ଶୋକରାଶି ଉଭୟ ଚୂର୍ଣ୍ଣ କରିପାରୁନାହାନ୍ତି । ଯାଉଛି ଦେଖିବି, ଏତେ ରାତିରେ କେହି ଶବଦାହ କରିବାକୁ ଆସୁଛନ୍ତି କି ନାହିଁ (ନେପଥ୍ୟକୁ ଯିବି ଫେରିଆସି)

ଆକାଶର ଦୃଶ୍ୟ କି ଭୟାନକ ! କୃଷ୍ଣବର୍ଣ୍ଣ ମେଘସଂଘ ଘନୀଭୂତ ହୋଇ ସ୍ତୂପୀକୃତ ଖର୍ପରଭା ପରି ପ୍ରତୀୟମାନ ହେଉଅଛି । ତନ୍ମଧ୍ୟରେ ସୌଦାମିନୀର କି ବିକଟ ହାସ୍ୟ ! ବଜ୍ର ନିର୍ଘୋଷ ଶ୍ମଶାନ କି ଗମ୍ଭୀର ଓ ଭୟାନକ ! କିନ୍ତୁ ହୃଦୟରେ ଲେଶମାତ୍ର ଭୟ ନାହିଁ । ପାଷାଣ ହୃଦୟରେ ରାଣୀଙ୍କର ସେହି ପ୍ରଚଣ୍ଡ ମୂର୍ତ୍ତି, ରୋହିତାଶ୍ୱର କୋମଳ ଲାବଣ୍ୟମୟ ମୁଖଚନ୍ଦ୍ର ମାତ୍ର ବାରମ୍ବାର ଉଠୁଛି । ଚିତ୍ତର ଆକୁଳତା, ବୃଥା ଆଶା, ବୃଥା ଅଭିମାନ, ବୃଥା ମମତାର ଏକମାତ୍ର ମହୌଷଧ ଭଗବାନଙ୍କର ସ୍ତବ । ଯାଉଛି ଚିତାଗ୍ନି ନିକଟରେ ଶ୍ମଶାନ ରକ୍ଷୀ ଶବଦାହକାରୀ ବ୍ୟକ୍ତିମାନଙ୍କୁ ଅପେକ୍ଷା କରିବ । ଚଣ୍ଡାଳ ମୋର ମୁନିବ-ପ୍ରଭୁ । ଆଜି ଯେଉଁ ରାଜସ୍ୱ ଆଦାୟ କରିଅଛୁ, ତାହା ଅତି ଅଳ୍ପ । ସମ୍ଭବତଃ ମୁନିବ ବିରକ୍ତ ହେବେ ।

(ନେପଥ୍ୟକୁ ପ୍ରସ୍ଥାନ)

(ମୃତ ରୋହିତାଶ୍ୱକୁ ସ୍କନ୍ଧରେ ଧରି ରାଣୀ ଓ ବିପ୍ରଙ୍କର ସ୍ୱତନ୍ତ୍ର ଭାବରେ ପ୍ରବେଶ)

ବିପ୍ର—ଆଉ କାନ୍ଦନାହିଁ, ଆଶ୍ୱସ୍ତ ହୁଅ । ବାଳକଟି ଜନ୍ମହେବା ଏବଂ ଶେଷରେ ସର୍ପାଘାତରେ ମରିଯିବା ଏ ଦୁଇଗୋଟି ଘଟଣା ମନୁଷ୍ୟର ଆତ୍ମାଧୀନ ନୁହେଁ । ବୃଥା କନ୍ଦାକଟା କଲେ ଆଉ କିଛି ଫଳ ନାହିଁ ।

ରାଣୀ—ମହାଶୟ ! ଆପଣ ଅତ୍ୟନ୍ତ ଦୟାଳୁ । ଶ୍ମଶାନ ଦେଖାଇଦେବା ସକାଶେ ଆପଣ ମୋ ସଙ୍ଗରେ ଏତେ ବାଟ ଆସିଲେଣି । ଆପଣ ଫେରି ଯାଆନ୍ତୁ । ମୁଁ ଶବଦାହ କରି ଫେରିଯିବି ।

ବିପ୍ର—ଉତ୍ତମ କଥା ! ବର୍ଷା ହେବ-ଝଡ଼ ଉଠେଇଛି ।

(ଆକାଶକୁ ଚାହିଁ ଚାହିଁ ପ୍ରସ୍ଥାନ)

ରାଣୀ—(ରୋହିତାଶ୍ୱଙ୍କୁ କୋଳରେ ଧରି ଶୋକଭରେ ଗୀତ)
ଅଭାଗିନୀ ରାଜସୁତା, ଅଯୋଧ୍ୟା ରାଜବନିତା,
ଜାଣି ଧାତା ଦିଅଇ କଷଣ ।
ସୁକୁମାର ଶିଶୁସୁନୁ, ଲବଣୀ କୋମଳ ତନୁ,
ଦିନୁ ଦିନୁ ହୋଇଲା ମଳିନ ॥
ଶୁଖିଛି ଚନ୍ଦ୍ରବଦନ, ବହୁଛି ମୁଖେ ଘରମ,
ଜ୍ୟୋତିହୀନ ଦିଶୁଛି ନୟନ
ଜୀବଧନେ ଏ ଯାତନା, ହୃଦେ ପରମବେଦନା,
ଅକାଳେ ନାଶିବ ମୋ ଜୀବନ ॥
ଅନାହାରେ ଶିଶୁମୋର, ଅଶକ୍ତ ହୋଇ କାତର,
ମୁଖେ ନାହିଁ ସେ ସୁଧା ବଚନ
ଜନମାଇ ନୃପଘରେ, ବଢ଼ାଇ ସୁଖ ସୁଧାରେ,
ବିଧିଦେଉ ଏ କଷ୍ଟ ଭୋଜନ ॥

(ହରିଶ୍ଚନ୍ଦ୍ରଙ୍କର ପ୍ରବେଶ)

ହରିଶ୍ଚନ୍ଦ୍ର—ତୁମ୍ଭେ କିଏ ? କାହିଁକି ଏତେ ରାତ୍ରିରେ ଶ୍ମଶାନକୁ ଆସିଅଛ ?

ରାଣୀ—ମହାଶୟ ! ମୋର ସନ୍ତାନଟି ସର୍ପଦଂଶନରେ ମୃତ ହୋଇଅଛି । ଦାହ କରିବାକୁ ଏହି ସ୍ଥାନକୁ ଆସିଥିଲି ।

ହରିଶ୍ଚନ୍ଦ୍ର—ଅନ୍ଧାରରେ ମୁଁ ଆପଣଙ୍କୁ ଉତ୍ତମରୂପେ ଦେଖିପାରୁ ନାହିଁ । କିନ୍ତୁ ଭାଷାରୁ ଅନୁମାନ କରିପାରୁଛି, ଆପଣ ଭଦ୍ରବଂଶରେ ଜନ୍ମଗ୍ରହଣ କରିଅଛନ୍ତି । ଆହା ! ପୁତ୍ରଶୋକ ଆପଣଙ୍କୁ କେତେଦୂର ପୀଡ଼ାକର ହୋଇଥିବ ।

ରାଣୀ—ଆପଣ ମଧ୍ୟ ନିର୍ଜ୍ଜନ ଶ୍ମଶାନ ମଧ୍ୟରେ ଠିଆହୋଇ ମୋ ପରି ଦୀନ ଦୁଃଖିନୀର ଦୁଃଖରେ ଦୁଃଖୀ ହେବାଦ୍ୱାରା ଭଦ୍ର ବୋଲି ପରିଚିତ ହେଉଅଛନ୍ତି । କି ନାମଦ୍ୱାରା ଆପଣଙ୍କୁ ସମ୍ବୋଧନ କରିବି ?

ହରିଶ୍ଚନ୍ଦ୍ର—ମୁଁ ଜଣେ ସାମାନ୍ୟ ଚଣ୍ଡାଳ-ନା ଚଣ୍ଡାଳଠାରୁ ଅଧମ; କାରଣ ଚଣ୍ଡାଳ ଘରେ ଗୃହକର୍ମ କରେ ।

ରାଣୀ—ଆହା ମହାଶୟ ! ଆପଣଙ୍କ ପରି ମିଷ୍ଟଭାଷୀ ଭଦ୍ରବ୍ୟକ୍ତି ଚଣ୍ଡାଳ ଶ୍ରେଣୀରେ ଦେଖାଯାନ୍ତି ନାହିଁ ।

ହରିଶ୍ଚନ୍ଦ୍ର—ତଥାପି ଚଣ୍ଡାଳ ହୋଇ-ଭଦ୍ରବ୍ୟକ୍ତି ଭାବେ ମୁଁ ସମାଜରେ ପରିଚିତ ନୁହେଁ । ବର୍ତ୍ତମାନ ମୁଁ ଯେଉଁ କାର୍ଯ୍ୟରେ ଏଠାରେ ନିଯୁକ୍ତ ଅଛି, ତାହା ଆହୁରି ହେୟ ।

ରାଣୀ—କି କାର୍ଯ୍ୟରେ ନିଯୁକ୍ତ ଅଛନ୍ତି ?

ହରିଶ୍ଚନ୍ଦ୍ର—ଶବଦାହକାରୀ ବ୍ୟକ୍ତିମାନଙ୍କଠାରୁ ମୁଁ ରାଜସ୍ୱ ଆଦାୟ କରେ ।

ରାଣୀ—ଭଦ୍ର ! ମୋର ରାଜସ୍ୱ ଦେବାର ଶକ୍ତି ନାହିଁ, ଆପଣ ମୋତେ କ୍ଷମା କରିବେ ।

ହରିଶ୍ଚନ୍ଦ୍ର—ତା କିପରି କରିବ ? କର୍ତ୍ତବ୍ୟ କର୍ମରେ ହେଳା କରିବି ନାହିଁ ।

ରାଣୀ—ମହାଶୟ, ମନେକରିବେ ନାହିଁ ଯେ ମୁଁ ରାଜସ୍ୱ ଦେବାକୁ କୁଣ୍ଠିତା । କର୍ତ୍ତବ୍ୟନିଷ୍ଠ ବ୍ୟକ୍ତିମାନଙ୍କୁ ମୁଁ ସର୍ବଦା ଭକ୍ତିଭାବରେ ଗ୍ରହଣ କରେ । ଯଦି ମୋ ନିକଟରେ ଗୋଟିଏ ପୂର୍ଣ୍ଣ ସୁବର୍ଣ୍ଣ ମୁଦ୍ରା ଥାନ୍ତା, ତାହେଲେ ସମ୍ପୂର୍ଣ୍ଣ ସେହି ମୁଦ୍ରାଟି ଆପଣଙ୍କୁ ଦେଇ ମୋର କାର୍ଯ୍ୟ ଶେଷ କରିଥାନ୍ତି । ଆପଣଙ୍କୁ ଦୁଇଥର ମାଗିବାକୁ ପଡ଼ି ନ ଥାନ୍ତା ।

ହରିଶ୍ଚନ୍ଦ୍ର—ମୋର ଏତେ ଅର୍ଥ ଅର୍ଥାତ୍ ଗୋଟିଏ ପୂର୍ଣ୍ଣ ସୁବର୍ଣ୍ଣ ମୁଦ୍ରାର ପ୍ରୟୋଜନ ନାହିଁ । ସାମାନ୍ୟ ଅର୍ଥର ପ୍ରୟୋଜନ । ଆପଣ ଯେପରି ଉଦାର ହୃଦୟର ପରିଚୟ ଦେଇଅଛନ୍ତି, ଆପଣଙ୍କ ସ୍ୱାମୀ ଧନାଢ୍ୟ ହୋଇଥିବେ । (ସ୍ୱଗତ) କାହିଁକି ଏହି ରମଣୀର କଣ୍ଠ ବସି ଯାଇଅଛି । ତଥାପି ତହିଁରେ କ'ଣ ଅଛି ? କି ଅନିର୍ବଚନୀୟ ତତ୍ତ୍ୱ ରହିଛି—ମୋତେ ବାରମ୍ବାର ସେହି ସୁଖ ସ୍ମୃତି ଭିତରକୁ ଟାଣି ନେଇଯାଉଅଛି ।

ରାଣୀ—ମୁଁ ସଧବା ସତ୍ୟ, କିନ୍ତୁ ସ୍ୱାମୀ ମୋ ନିକଟରେ ନାହାନ୍ତି ।
(ସ୍ୱଗତ) କିଣ୍ଣୁର ସାମଞ୍ଜସ୍ୟ ଏତେ ଅଧିକ ! ଆହା କି ଅମୃତ ମୂର୍ତ୍ତି !
କି ମନୋହର ମୂର୍ତ୍ତି !!

ହରିଶ୍ଚନ୍ଦ୍ର—କ୍ଷମା କରନ୍ତୁ, ଆପଣଙ୍କ ସ୍ୱାମୀ ନିତାନ୍ତ ଅଧମ, ନିଷ୍ଠୁର ବ୍ୟକ୍ତି !
କାରଣ ସ୍ତ୍ରୀକୁ ଏପରି ଦରିଦ୍ର ଅବସ୍ଥାରେ ରଖିଅଛନ୍ତି ଯେ ସେ
ସାମାନ୍ୟ ରାଜସ୍ୱ ଦେଇ ପାରୁନାହାନ୍ତି ।

ରାଣୀ—ଆପଣ ଅତ୍ୟନ୍ତ ମୂର୍ଖ କିମ୍ବା ପାଷଣ୍ଡ ହୋଇ ନ ଥିଲେ ସହସା
ମୋର ସ୍ୱାମୀଙ୍କୁ ନିନ୍ଦା କରନ୍ତେନାହିଁ । ମୋର ସ୍ୱାମୀ ସାମାନ୍ୟ
ବ୍ୟକ୍ତି ନୁହନ୍ତି । ସସାଗରା ପୃଥିବୀର ଅଧୀଶ୍ୱର ହୋଇ ସେ ସମସ୍ତ
ପୃଥିବୀ ଦାନ କରି ପାରିଥିଲେ ।

(ଅଞ୍ଚଳ ମୁଖରେ ଦେଇ ରୋଦନ)

ହରିଶ୍ଚନ୍ଦ୍ର—ମହାରାଜ ହରିଶ୍ଚନ୍ଦ୍ର ପୃଥିବୀର ଅଧୀଶ୍ୱର ଥିଲେ, ବର୍ତ୍ତମାନ
ବିଶ୍ୱାମିତ୍ର ରାଜା ଅଟନ୍ତି । ଆପଣଙ୍କ ସ୍ୱାମୀ ହରିଶ୍ଚନ୍ଦ୍ର ମହାରାଜ ?

ରାଣୀ—ହଁ !

ହରିଶ୍ଚନ୍ଦ୍ର—ପ୍ରିୟେ ! ମୁଁ ସାହସପୂର୍ବକ ତୁମ୍ଭର କରଧାରଣ କରୁଅଛି ।
ତୁମ୍ଭଙ୍କୁ ବ୍ରାହ୍ମଣ ବଣିକଠାରେ ବିକ୍ରୟ କରି ମୁଁ ଚଣ୍ଡାଳ ଘରେ
କ୍ରୀତଦାସ ହୋଇଅଛି । ହାୟ ! ହାୟ ! ରୋହିତାଶ୍ୱର ଏହି ଦଶା !
[ପୁତ୍ରକୁ କୋଡ଼ରେ ଧରି ଉପବେଶନ]

ରାଣୀ—[ସହସା ବିଦ୍ୟୁତ୍ ଚମକ ଦେବାରୁ] ମହାରାଜ ! ଆପଣଙ୍କର ଏହି
ଦଶା ! ବିଦ୍ୟୁତ୍ ଆଲୋକରେ ଆପଣଙ୍କର ମୁଖ ଓ ବିଶେଷତଃ
ଦକ୍ଷିଣନୟନ ଦର୍ଶନକରି ମୁଁ ଚିହ୍ନି ପାରିଅଛି; କିନ୍ତୁ ପୁତ୍ରକୁ ମୃତ ଦେଖି
ସ୍ୱାମୀଙ୍କୁ ଚଣ୍ଡାଳବେଶରେ ଶ୍ମଶାନରେ ଦେଖି ମୋର ସଂଜ୍ଞା ଲୋପ
ହେଉଅଛି । [ମୂର୍ଚ୍ଛା ।]

ହରିଶ୍ଚନ୍ଦ୍ର—[ଶ୍ମଶାନ କଲସିରୁ ଜଳଆଣି ସେଚନପୂର୍ବକ] ଦେବି ! ମୁହୂର୍ତ୍ତକ ପାଇଁ ଜାଗ୍ରତ ହୁଅ; ମୋର ମଧ୍ୟ ଜୀବନପ୍ରଦୀପ ଅଳ୍ପକ୍ଷଣ ମଧ୍ୟରେ ନିର୍ବାପିତ ହେବ ।

ରାଣୀ—[ଆଶ୍ୱସ୍ତହୋଇ] ମହାରାଜ ! ଆପଣଙ୍କର ଏହି ଦୀନବେଶ ଦେଖି-ପାରିବି ନାହିଁ । ଯଦି କେହି ମୋ ହୃଦୟରୁ ରକ୍ତମାଂସ ନେଇ ଆପଣଙ୍କୁ ମୋ ନିକଟରେ ସୁ ବେଶରେ ଠିଆ କରିଦେବ, ତା'ହେଲେ ଦେହର ରକ୍ତମାଂସ ଦେବାକୁ ପ୍ରସ୍ତୁତ ।

ହରିଶ୍ଚନ୍ଦ୍ର—ପ୍ରିୟେ ! ଏକ ମୁହୂର୍ତ୍ତ ଅପେକ୍ଷା କର । ଜୀବନକୁ ଏହିକ୍ଷଣି ବଳପୂର୍ବକ ପରିସମାପ୍ତି କରିବି । ବିନା ରାଜସ୍ୱରେ ପୁତ୍ରର ଦାହକାର୍ଯ୍ୟ କଲେ ପାପଭାଗୀ ହେବି । ପୁନଶ୍ଚ ଅନ୍ୟପକ୍ଷରେ ଦେଖୁଅଛୁ, ମୋର ଶୋକାଗ୍ନି ଏତେ ପ୍ରବଳ ହୋଇଅଛି ଯେ ଜୀବନ ଧାରଣ କରି ଆଉ ରହିପାରିବି ନାହିଁ । ଅତଏବ ଏହି ପ୍ରସ୍ତାବ କରୁଅଛୁ ଯେ ଜ୍ୱଳନ୍ତ ଚିତାରେ ପୁତ୍ରର ଶବକୁ ନିକ୍ଷେପ କରି ମୁଁ ସ୍ୱୟଂ ତହିଁରେ ପତିତ ହେବି, ତୁମ୍ଭେ ମଧ୍ୟ ମୋର ଅନୁଗାମିନୀ ହେବ ।

ରାଣୀ—ଏହି ପ୍ରସ୍ତାବଟି ସାଧୁ ଅଟେ । ଆପଣ ଆଉ ବିଳମ୍ବ ନ କରି ଚିତାଗ୍ନି ପ୍ରସ୍ତୁତ କରନ୍ତୁ ।

ହରିଶ୍ଚନ୍ଦ୍ର—[ଚିତାଗ୍ନିକୁ ଅଧିକ ଅଧିକ ପ୍ରଜ୍ୱଳିତ କରି ଆତ୍ମହତ୍ୟା କରିବା ଅଭିପ୍ରାୟରେ ଦଣ୍ଡାୟମାନ] [ନେପଥ୍ୟରୁ ମହାଦେବଙ୍କର ଆବିର୍ଭାବ ଏବଂ ଅଗ୍ନିପତନ ନିବାରଣପୂର୍ବକ]

ମହାଦେବ—ସ୍ଥିରହୁଅ ! ସଂସାରକ୍ଷେତ୍ରରେ ନିଜର ଧର୍ମ ଓ ସତ୍ୟପାଳନ କରିବା ସକାଶେ ତୁମ୍ଭେ ଯେଉଁ କୃତିତ୍ୱ ଦେଖାଇଅଛ, ତାହା ବିରଳ ଅଟେ । ଜୀବନର ଅବସ୍ଥା ବା ଘଟଣାବଳୀ କ୍ଷଣଭଙ୍ଗୁର ଅଟେ ।

ଧର୍ମ ଓ ସତ୍ୟର ବିନାଶ ନାହିଁ । ତୁମ୍ଭେ ଅକ୍ଷୟ ଯଶ ସଞ୍ଚୟ କରିଅଛ, ନିଶ୍ଚୟ ସୁଖୀହେବ ।

[ପାଦ ସ୍ପର୍ଶ କରିବାରୁ ରୋହିତାଶ୍ୱର ଉତ୍ଥାନ]

ମହାଦେବ—[ହରିଶ୍ଚନ୍ଦ୍ର, ଶୈବ୍ୟା ଓ ରୋହିତାଶ୍ୱ ପ୍ରତି] ଏପାରର ଘଟଣା ମାତ୍ର ମିଥ୍ୟା ଅଟେ । ଏହି ବିଷୟରେ ଦେବତାମାନେ ସାକ୍ଷ୍ୟ ଦେବେ ।

[ନେପଥ୍ୟରୁ ଇନ୍ଦ୍ର, ବିଶ୍ୱାମିତ୍ର ଓ ଧର୍ମରାଜଙ୍କର ପ୍ରବେଶ]

ଇନ୍ଦ୍ର—ମହାରାଜ ! ମୁଁ ସାକ୍ଷୀ, ଆପଣ କେବଳ ସତ୍ୟପଥରେ ଅଧିରୂଢ଼ । ଆପଣଙ୍କ କମ୍ବା ରାଣୀଙ୍କୁ କେହି ଅପମାନିତ କରିନାହାନ୍ତି ।

ବ୍ରାହ୍ମଣବଣିକ—ମହାରାଜ ! ମୁଁ ଅଗ୍ନିଦେବତା ।

ଚଣ୍ଡାଳ—ମହାରାଜ ! ମୁଁ ଧର୍ମରାଜ । ସତ୍ୟର ପରୀକ୍ଷାଦେବା ସମୟରେ ଆପଣ ମୋ ଅଧୀନରେ କାର୍ଯ୍ୟ କରିଅଛନ୍ତି । ଅତଏବ ଅପମାନିତ ହୋଇନାହାନ୍ତି ।

ବିଶ୍ୱାମିତ୍ର—ଇହଲୋକ, ପରଲୋକ ଆପଣଙ୍କୁ ପ୍ରାପ୍ତ ହୋଇଅଛୁ । ଆପଣ ଯେଉଁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି, ତାହା ଅତ୍ୟନ୍ତ ଦାରୁଣ ଓ କଲ୍ୟାଣକର ଅଟେ । ମହାରାଜ ! ଏବେ ନିଜରାଜ୍ୟରେ ନିଜେ ରାଜାହୋଇ ପୂର୍ବପ୍ରାପ୍ୟ ପୃଥିବୀ ପାଳନକରନ୍ତୁ ଏବଂ ମୋର ଆଶୀର୍ବାଦ ପ୍ରଭାବରେ ପରଲୋକ ମଧ୍ୟ ଏହି ଶରୀରରେ ଭୋଗକରନ୍ତୁ । [ସମସ୍ତଙ୍କର ପ୍ରସ୍ଥାନ]

[ଯବନିକା ପତନ]

